Approved by the Utkal University as non-detailed study for the Pre-University Examinations.

---

# ଗଳ୍ପ ସମାରୋହ

ସଙ୍କଳକ :

ଶ୍ରୀ ଜଗନ୍ନାଥ ରଥ

ଦ୍ଵିତୀୟ ପ୍ରକାଶ;
୧୯୬୭

ପ୍ରକାଶକ:

ଜଗନ୍ନାଥ ରଥ

ବିନୋଦବିହାରୀ, କଟକ-୨

ମୂଲ୍ୟ—ଦୁଇ ଟଙ୍କା ମାତ୍ର

# ସୂଚିପତ୍ର



—ঃ*ঃ—

# ପରୀକ୍ଷାର ଫଳ

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର

ମାର୍ଚ୍ଚ ମାସଟାରେ ମେଟ୍ରିକ୍ୟୁଲେସନ, ଇଣ୍ଟରମିଡ଼ିଏଟ୍, ବି. ଏ., ସର୍ଭେ, ଡାକ୍ତରୀ ପ୍ରଭୃତି ସବୁ ପରୀକ୍ଷା ସରିଯାଏ । ଋଇଜ୍ୟାକ ପରୀକ୍ଷାର୍ଥୀମାନେ ପରୀକ୍ଷା ଶନ୍ତାରୁ ଖଲାସ ପାଇ ଟିକିଏ ଦପ୍ତର-ଟେବଲେ ଓଦାଗାମୁଛା ପକେଇ ଆପଣ ଭଳି ଆସକତ ମେଣ୍ଟାନ୍ତି । ଅନ୍ୟାନ୍ୟ ଗୁରୁମାନେ ମଧ୍ୟ ଗ୍ରୀଷ୍ମାବକାଶ ଛୁଟିରେ ଇସ୍କୁଲ-କଲେଜର ଘୋଷର ହଣାରୁ ମୁକ୍ତ ପାଇ ଦପ୍ତର-ଟେବଲ ଷାଠିଏଟା ନିଶ୍ୱାସ ମାରିବାକୁ ଅବସର ପାଆନ୍ତି । ଆଉ ଗୋଟିଏ ବଡ଼ ମଜାର କଥା ଏହି ଯେ, ଠିକ୍ ଏହି ସମୟରେ ବାହାନଗ ପଡ଼େ । ବୋଧହୁଏ ପଞ୍ଜିକାରମାନେ ପରୀକ୍ଷା ଆଗରୁ ଜାଣି ପାଞ୍ଜି ଲେଖିଥାନ୍ତି, ଅଥବା ସରକାର ବାହାନଗ କଥା ଜାଣି ପରୀକ୍ଷା ଦିନମାନ ଧାର୍ଯ୍ୟ କରନ୍ତି ।

ସେପାରେ, ହରେକୃଷ୍ଣପୁର ସୁନ୍ଦରବାବୁଙ୍କ ପୁଅ ଚନ୍ଦ୍ର ଏ ବର୍ଷ ଇଣ୍ଟରମିଡ଼ିଏଟ୍ ପରୀକ୍ଷା ଦେଇଛି । ଆଗରୁ କଥା ସାର ହୋଇଛି ଯେ ଏହି ବର୍ଷ ବୈଶାଖ, ଜ୍ୟେଷ୍ଠମାସ ତା'ର ବାହାଘର ହେବ । କନିଆ ଘର ବାଲେଶ୍ୱର ସହର । କନିଆର ବାପ ଶ୍ୟାମଘନବାବୁ

କଲଟେରେ ଚୌକ ଅଫିସରେ କରାମଗିରି କରି ବୁଢ଼ା ହେଲେଣି । ଘରେ ବେଶ ବିଷୟ ବାଡ଼, ବାହାରେ ବେଶ୍ ମାନ, ଖାତର । ଶ୍ୟାମଘନବାବୁ ବଡ଼ ପୁରୁଣାକାଳିଆ ଅଡାଢ଼ ମଣିଷ । ସେ ଯାହା ବୁଝିଥିବେ—ଆଉ ବ୍ରହ୍ମା-ବିଷ୍ଣୁ ଆସିଲେ ବି ସେଥିରୁ ତଳେ ଟଳିବେ ନାହିଁ । କିନ୍ତୁ ସେ ଠିକ୍ ମରହଟ୍ଟି ଖାଣ୍ଟି । ତାଙ୍କର ଚିରକାଳ ଗୋଟିଏ ଧାରଣା ଯେ ମଣିଷ ଅନ୍ତତଃ ଗୋଟାଏ ଖଣ୍ଡେ ପାଶ ନ-କଲେ ସେଉଟା ମଣିଷ ନୁହେଁ । ଏହି ବିଶ୍ୱାସରେ ପଡ଼ି ସେ ତାଙ୍କର ଏକମାତ୍ର ଗେହ୍ଲାଝିଅ ତିଳ ପାଇଁ ଗୋଟିଏ ପାଶ୍‌କରା ଜୋଇଁଟିଏ ଅନ୍ୱେଷଣ କରୁଛନ୍ତି । ଦୁଇ ବର୍ଷ ପୂର୍ବେ, ଯେଉଁ ବର୍ଷ ଚନ୍ଦ୍ରୁ ବାଲେଶ୍ୱର ଜିଲ୍ଲା ସ୍କୁଲରୁ ମେଟ୍ରିକୁ୍ୟଲେସନ ପରୀକ୍ଷା ଦେଲା, ସେହି ବର୍ଷ ବିଶୁ ବୋଲି ଆଉ ଗୋଟିଏ ପିଲା ମଧ୍ୟ ତାହାର ସାଙ୍ଗରେ ପରୀକ୍ଷା ଦେଇଥିଲା । ବିଶୁ ଭଲ ପିଲା; ତାର ପାଶ୍ କରିବାର ଖୁବ୍ ଆଶା । ଅତଏବ ଶ୍ୟାମଘନବାବୁ ସେହି ବିଶୁକୁ ଜୋଇଁ କରିବେ ବୋଲି କଥାବାର୍ତ୍ତା ଠିକ କରିଥିଲେ । ବାହାଘରର ସବୁ ଠିକ୍‌ଠାକ୍ । କିନ୍ତୁ ଯେଉଁଦିନ ପିଉକାର ଚିଠାଉ ଯିବ, ସେହିଦିନ ଦଶାଦିଆ ପରୀକ୍ଷା ଫଳ ବାହାରିଲା ଯେ—ବିଶୁ ଫେଲ୍ । ଆଉ ଚିଠାଉ ଗଲା ନାହିଁ । ତେଣେ ବରଘର ଗୁହିଁ ଗୁହିଁ ରହିଲେ । ବିଶୁ ବିଚରା ଏଣେ ଫେଲ୍ ଦୁଃଖ,ତେଣେ ବାହାଭଙ୍ଗା ଦୁଃଖରେ ସଢ଼ିଗଲା । ତାର ବଡ଼ ଧକ୍‌କାର ଆସିଲା । ସେ ପ୍ରତିଜ୍ଞା କରିଥାଏ—"ଅଚ୍ଛା, ଶ୍ୟାମଘନକୁ ଥରେ ଦେଖିବି ।" ତହିଁ ଆରବର୍ଷ ସେ ପାଶ କଲା । ବିଶୁ ଯେଉଁ ବର୍ଷ ଫେଲ ହେଲା, ତାହାରି ସଙ୍ଗରେ ଚନ୍ଦ୍ରୁ ପାଶ୍ କଲା । ଶ୍ୟାମଘନ-ବାବୁ ଚାଲି ପରି ଯାଇ ଚନ୍ଦ୍ରୁ ବାପାକୁ ଧଇଲେ । ସେ କହିଲେ କି ତାଙ୍କ ପୁଅ ପିଲା—ଯଦି ହେବ ତ ଇଣ୍ଟରମିଡ଼ିଏଟ୍ ପରୀକ୍ଷା ପରେ ଦେଖିବା । ଶ୍ୟାମଘନବାବୁ ମଧ୍ୟ ଦେଖିଲେ ଯେ ତାଙ୍କର ତିଳ ବି

ପିଲା, ଆଉ ଦୁଇ ବର୍ଷ ଅପେକ୍ଷା କଲେ କିଛି କ୍ଷତି ନାହିଁ । ସେଇଥିରୁ ସେ 'ହଁ' ମାରି ଆସିଲେ । କିନ୍ତୁ ସେହି ଦିନରୁ ଆଜଯାକେ ସମୟ ସମୟରେ କଥାଟା ପକେଇ ଟିକିଏ ଟିକିଏ ମାଜି ନିଅନ୍ତି ।

ଏହି ସମସ୍ତ ଘଟନା ଯେବେ ହୋଇଥିଲା, ତା ପରେ ଦୁଇ ବର୍ଷ ବିତିଗଲାଣି । ଏହା ଭିତରେ ଦେଶରେ ପାଠୁଆ ଢେର ବଢ଼ି-ଗଲେଣି । ବୁଢ଼ାକାଳେ ଶ୍ୟାମଘନବାବୁ ମଧ୍ୟ ଅନେକ କଥା ଦେଖିଲେଣି, ଶୁଣିଲେଣି । ଏବେ ସେ କଥା ପଡ଼ିଲେ କହନ୍ତି ଯେ ଏଣ୍ଟ୍ରାନ୍‌ସ ପାଶ କରି ତ ଲୋକଙ୍କୁ ଚପରାଶି କାମ ମିଳୁ ନାହିଁ — ଏବେ ଏଫ୍. ଏ. ପାଶ ନ କଲେ ମଣିଷ ମଣିଷପଣିଆରେ ଲେଖା ନୁହେଁ । କାଳର ଗତି ସଙ୍ଗେ ସଙ୍ଗେ ତାଙ୍କର ଧାରଣାଟା ମଧ୍ୟ ଉପରକୁ ଚଢ଼ୁଛି । ତାଙ୍କର ମଧ୍ୟ ବିଶ୍ୱାସ ଯେ ଚନ୍ଦ୍ର ନିଶ୍ଚୟ ଏଫ୍. ଏ. ପାଶ କରିବ, ସେଥି-ପାଇଁ ସେ ପରୀକ୍ଷାର ଫଳ ନ ବାହାରୁଣୁ ବାହାଘରର ଦିନ ଠିକ କରିସାରିଲେଣି । ତେବେ ବେଳେବେଳେ ଇଚ୍ଛାଟା ହେଉଥାଏ ଯେ ଦିନଟାକୁ ଆଷାଢ଼ ମାସ ସରିକି ଘୁଞ୍ଚାଇଦେବା, ତାହାହେଲେ ଫଳଟା ଦେଖି ଯାହା ହେବାର ଗୋଟାଏ...... । କିନ୍ତୁ ଚନ୍ଦ୍ରର ବାପା ସେଥିରେ ରାଜି ନୁହନ୍ତି । ତାଙ୍କର ଇଚ୍ଛା—ଜ୍ୟେଷ୍ଠମାସ ଶେଷ ଆଡ଼କୁ ହେଉ । ବରପକ୍ଷରେ କଥା ବେଶି ଜୋର୍ । ସେମାନଙ୍କର କଥା ରହିଲା । ମାସର ୨୮ ଦିନକୁ ଲଗ୍ନ ଧରାହେଲା । କନିଆଘର ବର-ଘର ଦୁହେଁ ଯାକ ଯେ ଯାହାର ସଜଲରେ ରହିଲେ । କ୍ରମେ କ୍ରମେ ଦିନ କଟି ହୋଇ ଆସିଲା । ଆଠଦିନ ଆଗରୁ ସ୍ୟାକାର ଆସିଲା, ଫେରିଲା । ଦୁଇ ତରଫର ବନ୍ଧୁବାନ୍ଧବ, ମୂର୍ଯ୍ୟମୈତ୍ର, ପ୍ରିୟପ୍ରୀତିଙ୍କ ଘରକୁ ଗୁଆ-ଚିଟାଉ ଚାଲିଲା । ଯାଜ୍ଞିମଙ୍ଗଳା ହେଲା, ବଡ଼ ପଡ଼ିଗଲା । ଝିଅ କାନ୍ଦିଲା । ମଙ୍ଗଳଦାଗ ଦିନ ବରଘରେ ବର, କନିଆ

ଘରେ କନିଆ ମଙ୍ଗଳ ହେଲେ, କୋଇଲବୁଡ଼ ଗାଇଲେ । ତତ୍ପରେ ଆଶୀର୍ବାଦ କରଯାଇବା ହେବ ବୋଲି ବନ୍ଧୁବାସମାନେ ଆସି ପହଞ୍ଚିଗଲେଣି । ସେତେବେଳେ ବାର ବାଜିଗଲାଣି, ପ୍ରାୟ ଘଣ୍ଟା ଘଣ୍ଟା ପରିକା କିଏ କହିଲା ଯେ ପୋଷ୍ଟରୁ ଡାକବାଲା ଖଣ୍ଡେ ଟେଲିଗ୍ରାମ୍ ଆଣିଛି । ଟେଲିଗ୍ରାମ୍ ନାଁ ଶୁଣି ସମସ୍ତେ ଧାଇଁଗଲେ । ଚନ୍ଦୁ ବାପାଙ୍କ ନାମରେ ଟେଲିଗ୍ରାମ୍ । ଚନ୍ଦୁ ଟେଲିଗ୍ରାମ ଖଣ୍ଡିକ ନେଇ ଖୋଲିଦେଲା । ସେଥିରେ ଲେଖାଅଛି—

Do'nt start Bride-groom marriage stopped.

Shyamaghana

ବରପିତା ଭିତରେ ଥିଲେ, ଖବର ପାଇ ଧାଇଁଆସି ପଚାରିଲେ, "ଟେଲିଗ୍ରାମ୍ କଣ ?" ଚନ୍ଦୁ ତଳକୁ ମୁହଁ ପୋତି କହିଲା, "ଶ୍ୟାମଘନବାବୁ ଟେଲିଗ୍ରାମ୍ କରିଛନ୍ତି କି ବର ବାହାର କର ନାହିଁ, ବାହାଘର ବନ୍ଦହେଲା ।" ସମସ୍ତେ ଘଡ଼ିଏ କାଳ ଚୁପ ରହିଲେ । ବରକର୍ତ୍ତାଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ପ୍ରଥମତଃ, କଥାଟା କଣ ହେଲା ବୁଝିପାରିଲେ ନାହିଁ । ଦ୍ୱିତୀୟତଃ, ଅପମାନ; ତୃତୀୟତଃ, ପୁଅ ମଙ୍ଗଳା ହୋଇ ସାରିଲାଣି, ଯିମିତି ହେଲେ ବାହା ହେବ, କନିଆ କାହିଁ ? ଏହିପରି ସାତ ପାଞ୍ଚ ଭାବି ସେ ଏକାବେଳକେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଯେତେକ ବାହାଘରଆଏଁକ ସମସ୍ତେ ଆସି ରୁଣ୍ଡହେଲେ । ଘରଆଡ଼େ ଫୁସୁରୁ ଫାସର ଲାଗିଗଲା । କିଏ କହିଲା, ଶ୍ୟାମଘନବାବୁଙ୍କ ଜାତିଭାଇ ବୋଧହୁଏ ମନାକଲେ । ଆଉ ଜଣେ କହିଲା, "ହିଁ, ସହରିଆ ମହାନ୍ତି ଘରି ତ ଜାତିଆ ।" ଆଉ କେହି କହିଲା; ଆଜ କାଲିକା ପାଠପଢ଼ା କନିଆ, କୌଣସି ବାଗରେ ନାହିଁ କରିଥିବ । ଅନ୍ୟ ଜଣେ କହିଲା, "ଆମ ଚନ୍ଦୁ କଣ

କଣା ନା ହାଉଡ଼ା ନା ମୂର୍ଖ ନା ଅସୁନ୍ଦର ଯେ—" ଏହିପରି କେତେ ଲୋକ କେତେପ୍ରକାର କଳ୍ପନା କରିବାକୁ ଲଗିଲେ । ବନ୍ଧୁ-ବାନ୍ଧବଙ୍କ ଭିତରୁ ଜଣେ ବାହାରି କହିଲା କି "ସେ ଯାହାହେଉ, ଶ୍ୟାମ-ଘନବାବୁଙ୍କର ଭଲ କି ଅକଲ ! ଜବାବ ଦେଇ କାମବେଳକୁ ଇମିତି କଲି ! ଆମ ପୁଅ କଣ ପଚିଯାଉଥିଲା ନା ଘଷିଯାଉଥିଲା ? ଗୋଡ଼ିଧରା ଜବାବ ଦେଲା, ସହରିଆଙ୍କର ସେହିଆ ପରା ! ତାଙ୍କୁ ଆଉ ବିଶ୍ୱାସ ନାହିଁ । ବାଗରେ ପାଇଲେ ବେକରେ ଛୁରି ମାରି ଦେବେ । ସେଇଥିରୁ ଆଉ ଜଣେ ବାହାରିପଡ଼ି କହିଲା, "ଆରେ ଖାଲି ଗୁଡ଼ାଏ ବକା ହେଉଚ କାହିଁକି ? ସେ 'ଦୁଧ' ଦେଖିଛି, ଫାନ୍ଦ ଦେଖି ନାହିଁ । ଆଉବେଳ ଉଚ୍ଚୁର କରନାହିଁ । ଆସିଲ, କଏ ବାହାରୁଛି ମୋ ସାଙ୍ଗରେ; ରାତାରାତି ବାହାରିପଡ଼ି କାଲି ସକାଳଆ କଚେରିରେ ଖଣ୍ଡେ ଚାଞ୍ଜକଟାରେ ଫୌଜଦାରୀ ଆଉ ଖଣ୍ଡେ ଖେସାରତରେ ଅଦାଲତରେ ଦରଖାସ୍ତ କରିବା, ଦିଖଣ୍ଡ ଅରଜ ଲେଠାକରି ସାଫି କରି ଓକିଲ ପରାମର୍ଶ କରି ପହିଲା କଚେରିରେ ପେଶ କରିବାକୁ ବେଳ ହେଲେ ତ ହୁଏ । ଦେଖିବ, ସିଏ କେଡ଼େ ସହରିଆ ଆଉ ଆମେ ବି କେଡ଼େ ଘୂରିଆ ମହାନ୍ତି । ସ୍ୱେରର ଘରଚଳ ସହିତେ ଯଦି କୋରକରେ ନ ଆଣିଛି !" ଚନ୍ଦ୍ରଙ୍କ ବାପା ଆଉ ଚୁପ୍ ହୋଇ ରହିପାରିଲେ ନାହିଁ । ଏଥର ମୁହଁ ଫିଟେଇ କହିଲେ, "ତମର କଣ ଏତିକବେଳକୁ ସବୁ ବାଜେ ପରାମର୍ଶ କରିବାକୁ ଥିଲା ! ଏଇକ୍ଷଣି କାମ କମିତି ତୁଲାଣ ହେଉଛି; ଦେଖ । ଯାହା କରିବାର କର, ମୋତେ ଆଉ କିଛି ବୁଦ୍ଧି ଦିଶୁନାହିଁ । ଏହି କଥା ଶୁଣି ଦୁଇ ଚାରି ଜଣ ବାହାରି କହିଲେ କି "ବରଘର ମୁଣ୍ଡ ଠେକ, ତୁମେ ସେଥିପାଇଁ ଭାବନା କରୁଛ କାହିଁକି ? ମହାନ୍ତି ଜାତି, ଚଷାପୁଅ, ଘଣ୍ଟାକେ ଏଇକ୍ଷଣି କାହାଣେ କନିଆ ମିଳିବେ । ଚିନ୍ତା ଦେଲେ ନାହିଁ—କଣ କହୁଛ ?"

ସେହିଦିନ-ରାତାରାତି ଗଣ୍ଡବେଢ଼ରେ କନିଆ ଠିକଣା ହେଲା ? ମଙ୍ଗୁଳା ହେଲା । ପୁଅର ତ ବାହାଘର ରହିବ ନାହିଁ । କାଲି ଯିମିତି ହେଲେ ହେବ ।

ପାଠକେ ! ଏବେ ବରଘର ଛାଡ଼ି କନ୍ୟାଘରେ ହାଲ କଣ, ଦେଖିବାକୁ ଚାଲନ୍ତୁ ।

ଶ୍ୟାମଧନବାବୁ ମଙ୍ଗଳବାର ଦିନ ଘ୧୨ଣ୍ଟା ବେଳେ କଚେରୀରୁ ଫେରିଆସିଲାବେଳକୁ ଝିଅର ହଳଦୀଲଗା ଇତ୍ୟାଦି ସରିଲାଣି । ସେ ଘରକୁ ପଶିଲାକ୍ଷଣି ଝିଅ ଆସି ତାଙ୍କୁ ଧରି ବାହୁନି କାନ୍ଦିଲା । ଶ୍ୟାମଧନ ଭାବିଲେ, 'ଆଜି ବୁଧବାର, କାଲି ଗୁରୁବାର ବାହାଘର, ପହରଦିନ ଶୁକ୍ରବାର, ଝିଅ ବିଦା,—ଏତିକି ଭାବିଲାକ୍ଷଣି ଠିକଏ କାନ୍ଦି ପକାଇଲେ । ଏତେ ଶରଧାରେ ଝିଅଟିକି ବଢ଼ାଇଥିଲେ, ଆଉ ଦିନକ ପରେ ସବୁ ମାୟା କାଟିଦେଇ ସେ ପରଘରକୁ ଚାଲିଯିବ ! ମୁହଁ ଫିଟେଇ କହିଲେ, "ନା ମା, କାନ୍ଦ ନା, ଅଷ୍ଟମଙ୍ଗଳା ଗଲେ ତୋତେ ମୁଁ ନିଶ୍ଚେ ଘେନିଆସିବି । ତା ପରେ ମାସରେ ଦୁଇ ଥର ଲେଖାଏଁ ଯାଇ ଦେଖି ଆସିବି । ତୁ ଆଉ କାନ୍ଦ ନା ।" ଜଣେ କିଏ ଆସିକି ଏତିକିବେଳେ କହିଲା କି "ଡାକବାଲା କଣ ଆଣିଛି, ଡାକୁଛି ।" ଶ୍ୟାମଧନବାବୁ ବାହାରକୁ ଗଲେ । ତାର-ଅଫିସର ପିଅନ ଅପେକ୍ଷା କରିଥିଲା । ସେ ତା ହାତରୁ ଟେଲିଗ୍ରାମ୍ ଖଣ୍ଡିକ ନେଇ ବହିରେ ସହି କରିଦେଲେ । ଲଫାପା ଖୋଲି ଦେଖିଲେ —

"Chandru unfortunately got plucked."

ତଳେ କାହାର ଦସ୍ତଖତ ନାହିଁ । ଟେଲିଗ୍ରାଫ ପଢ଼ି ଶ୍ୟାମଧନବାବୁ ଲାଲ ହୋଇଗଲେ । କାଗଜ ଖଣ୍ଡ ଟିକି ଟିକି କରି

ତାଡ଼ାତଡ଼ି ଘର ଭିତରକୁ ଦମ୍ ଦମ୍ କରି ପଶିଗଲେ । ଘରଭିତରେ ବାହା ସରଞ୍ଜାମ ଯାହା ଆଗରେ ଥାଇଲେ, ଗୋଇଠା ଲେଖାଏଁ ଦେଇ ଗଡ଼େଇ ଚାଲିଗଲେ । ତିଳକବୋଉ ଆସି କହିଲେ, "କହୋ ! ଆଜ ଶୁଭଦିନଟାରେ ତମକୁ କିଛି ଝୁଙ୍କ ଦେଲାଣି କି ?" ଶ୍ୟାମବାବୁ ଆଖିକାଢ଼ି କହିଲେ, "ଚୁପ୍ ରହ, ତୋ ବାହାଘରରେ ନିଆଁ ଲଗୁ । କି ବାହାଘର—ନାହିଁ, ବାହାଘର ଫାହାଘର ମୁଁ କିଛି ଜାଣେ ନାହିଁ । ସବୁ ବନ୍ଦ । ବାସ୍ ! ଫେର ପାଟିକରିବ ତ ମୋ କଥା ଜାଣ ! ' ଏତିକି କହି କମିଜଖଣ୍ଡ ଗଳେଇ ଜୋତା ମାଡ଼ି ଦୁମ୍ ଦୁମ୍ କରି ବାହାରି ଚାଲିଗଲେ । ତାଙ୍କ ଢଙ୍ଗ କଥା ସମସ୍ତେ ଜାଣନ୍ତି—ହୁଁ କି ଚୁଁ ହେବାକୁ କେହି ସାହସ କଲେ ନାହିଁ । ତିଳକବୋଉକୁ ପଚାରିବାରେ ସେ କହିଲେ କି "ଏଇକ୍ଷଣି ପଚାରିଲେ ମିଛରେ ମାଡ଼ଖାଇବ ସିନା ! ସେ କଣ କାହାରି କଥା ମାନିବେ ? ତାଙ୍କ ଝିଅଙ୍କ କଥା କିଏ ନ ଜାଣିଛି କି ? ସେ ବୁଲିବାକି ଥଣ୍ଡାହୋଇ ଆସନ୍ତୁ, ଆଉ କଣ କରିବା ! "

ଶ୍ୟାମଘନବାବୁ ଏକା ନିଶ୍ୱାସକେ ଯାଇ ଟେଲିଗ୍ରାଫ ଅଫିସରେ ଦାଖଲ । ସେଠାରେ ଯେଉଁ ଟେଲିଗ୍ରାମ୍ କଲେ ତାହା ପାଠକେ ପାଟଣାପୁର ଚନ୍ଦ୍ରଙ୍କ ଘରଠାରେ ଦେଖିଛନ୍ତି । ସୋଜେ ଅଫିସରୁ ପାଟଣାପୁର ଯିବାକୁ ରାଜି ହୋଇଗଲା ।

ଶ୍ୟାମ୍‌ଘନବାବୁ ଡାକଘରୁ ଫେରିଆସି ଘରେ ଟିକିଏ ଥଣ୍ଡା ହେଲେ । କେବଳ ଏତିକି କହିଲେ ଯେ ସେଠି ମୁଁ କେବେ ଝିଅକୁ ଦେବିନାହିଁ । ବିଭାଘର ନ ହେବ ତ ନାହିଁ ପଛକେ ! ସମସ୍ତେ ଛି-ଛି-କାର କଲେ । ମଙ୍ଗଳ ହେଲା ଝିଅଟାକୁ ବିଭା ନ ଦେବ କିପରି ? କୁଳକୁ ନିନ୍ଦା ! ଜାତିକୁ ନିନ୍ଦା ! ଦେଶ-ସଂସାରକୁ ନିନ୍ଦା ! ସେତେ-

ବେଳେ ଶ୍ୟାମବାବୁ କହିଲେ କି "ହଉ, ଅନ୍ୟ ବର ଠିକ୍ କର, ବିଭା ଦିଅ—କିନ୍ତୁ ସେଠି ହେବ ନାହିଁ ।" ଯେ ଯେତେ କଥା କହିଲେ, ଯେତେ ବୁଝାଇଲେ, ତେବେ ବି ସେ ଅଟଳ । ସେହି ଏକ ଜିଦ୍ ଧରି ଥାନ୍ତି । 'ନା' । ବର କି ଇମିତି କୋଉଠି ମିଳୁଛି, କିଏ ଯାଙ୍କ ଲାଗି ଥାଳଟି ସଜାଡ଼ି ଚୌକାଠରୁ ବେଡ଼ିକ ବୋଡ଼ି ଲମ୍ବେଇ ଦେଇ ବସିଛି ଯେ କହିଲକ୍ଷଣୀ ଧାଇଁ ଆସିବ ! ଯାହାହେଉ, ବର ଖୋଜା ଲାଗିଲା ।

ପାଠକେ ଜାଣନ୍ତି ଯେ ବିଷ୍ଣୁ କଲେଜରେ ପଢ଼େ । ତା'ର ଏଥର ଫାଷ୍ଟ ଇୟର । ଗ୍ରୀଷ୍ମଛୁଟିରେ ସେ ଘରେ ଅଛି । ବିଷ୍ଣୁ ଏପରି କିଛି ଅଳିଆଘର ନୁହେଁ—ତେବେ ତା'ର ବାପା ଯିବାବେଳକୁ ଯାହା କିଛି ରଖିଦେଇ ଅଛନ୍ତି, ସେଥିରେ ତାର କଲେଜ ଖରଚ ଯାଇ ଘରେ ଏକରକମ ଚଳେ । ଘରକୁ ସେ ନିଜେ ମୁରବି । ଘରେ ମା', ଦାଦା ନେହରୁକା ଅଛନ୍ତି; ତେବେ ବିଷ୍ଣୁ ଆଜିକାଲିକା କଲେଜପଢ଼ା ଟୋକା—କୌଣସି କଥାରେ ସେ କାହାରି ଅପେକ୍ଷା ରଖେ ନା । ନିଜ ମାମଲତରେ ନିଜେ ଥାଏ ।

ସମ୍ବନ୍ଧ ସବୁ ସ୍ଥାନରେ ଚେଷ୍ଟା କଲେ, କିନ୍ତୁ ବିଷ୍ଣୁ କଥା ଥରେ ହେଇ ଭାଙ୍ଗି ଯାଇଥିଲା ବୋଲି ସେଆଡ଼କୁ କେହି ଗଲେ ନାହିଁ । ବର କାହିଁ ସଜିଲ ହେଲା ନାହିଁ । ସଞ୍ଜ ବାଜିଗଲା । ରାତି ପାହିଲେ ବାହାଘର । ବିଷ୍ଣୁଙ୍କ ଘର ବାଲେଶ୍ୱର ସହର ଭିତରେ, ଶ୍ୟାମବାବୁଙ୍କ ଘରଠାରୁ ଏପରି କିଛି ଦୂର ନୁହେଁ । ଏସବୁ କଥା ଶୁଣି ବିଷ୍ଣୁ ଶ୍ୟାମଧନବାବୁଙ୍କଠାକୁ ଜଣେ ଲୋକ ପଠାଇଲେ । ଲୋକ ଆସି ଶ୍ୟାମବାବୁଙ୍କୁ କହିଲା କି "ଆର ସାହି—ଙ୍କ ପୁଅ ବିଷ୍ଣୁବାବୁ ଆପଣଙ୍କ ଏ ବିପଦ କଥା ଶୁଣି ଭାରି ଅବଶୋଷ କରୁଛନ୍ତି । ଆପଣଙ୍କ ପାଖକୁ ମୋ ହାତରେ କହିଛନ୍ତି କି ଆପଣ ଯଦି ନଚାହାନ୍ତି କୋଉଠି ବର

ନ ପାଆନ୍ତି ତେବେ ସେ ନିଜେ—ତାକୁ ଆପଣ ଯାହା କହିବେ, ସେ ତାହା କରିବେ ।” ଏ କଥା ଶୁଣି ଶ୍ୟାମଘନବାବୁ ମନଟା ହଠାତ୍ କମିତକା ହୋଇଗଲା । କିନ୍ତୁ ଏତେ ବିପଦ-ଅନ୍ଧାର ଭିତରେ ଟିକିଏ ଆଲୁଅ ପାଇ ସେ ବଡ଼ ଆରାମ ପାଇଲେ । କ୍ରମେ ସେ କ୍ଷୀଣ ଆଲୁଅ ଟିକକ ବଢ଼ି ବଢ଼ି ମନର ପ୍ରଥମ ସନ୍ଦେହଟିକ କୁଆଡ଼େ ଦୂର କରିଦେଲା । ସେ କହିଲେ, “ବିଶୁଟି ବେଶ ପିଲା । ତା ବାପା ଯେତେବେଳେ ଥିଲା— ।” ଲୋକଟି ଆଙ୍ଗୁଳି ପାଇ ଗିଳିବାକୁ ବସିଲା । ଶ୍ୟାମବାବୁଙ୍କ କଥା ମଝିରେ ପାଟି କରି ବାଧା ଦେଇ କହିଲା, “ବିଶୁବାବୁ ଆହୁରି କହିଅଛନ୍ତି ଆପଣ ତାଙ୍କ ମୁରବ୍ବୀ । ଆଉ କହିଲେ କି ଘର କରି ଭଲମନ୍ଦ, ବିପଦ ଆପଦ କାହାର ନ ଅଛି ଯେ ଯାହା ହାନି ଲଭ, ନିକବଦରେ— ।” ଶ୍ୟାମଘନବାବୁ ବାଧାଦେଇ କହିଲେ, “ମୁଁ ଜାଣେ ପରା ବିଶୁକୁ ।” ଲୋକ ପୁନରାୟ କହିଲା, “ସେ କହିଲେ କି ଆପଣଙ୍କ ବିପଦ କଣ ତାଙ୍କର ବିପଦ ନୁହେଁ ନା, ଆପଣଙ୍କୁ ନିନ୍ଦା ହେଲେ ତାଙ୍କୁ ନିନ୍ଦା ନୁହେଁ ନା ?” ଶ୍ୟାମବାବୁ କହିଲେ, “ତେବେ—ହିଁ, ବିଶୁର ତ କିଛି ସକାଳ ନ ଥିବ, ମୁଁ ନିଜେ ଯାଇ କଥା ସାରିକରି ତାକୁ ଧରି ଆଣିବି । ଆଜି ଆମରି ଘରେ ଆଜ ରାତି ଭିତରେ ମଙ୍ଗୁଳି ଦବା; କାଲି ତ ବାହାଘର ।” ଲୋକ କହିଲା କି ସେ ଆହୁରି ଗୋଟିଏ କଥା କହିଅଛନ୍ତି ଯେ ତାଙ୍କର ଏ ବର୍ଷ ବାହାହବା ପଡ଼ାପଢ଼ିରେ ଅସୁବିଧା, ପଇସା କଉଡ଼ିରେ ଖେଞ୍ଚଖୁଞ୍ଚ, ଇଚ୍ଛା ବି ନାହିଁ, ସବୁ ରକମ— ଖାଲି ଆପଣଙ୍କର ଏ ବିପଦ କଥା ଶୁଣି ସେ ନିଜର ଯାହା ହେଉ ପଛକେ—

ଶ୍ୟାମଘନବାବୁ ଏକାବେଳେକେ ତରଳିଯାଇ ଗଦ୍‌ଗଦ ହୋଇ କହିଲେ, “ତାର ଯାହା କିଛି ଅସୁବିଧା ସବୁ ମୁଁ ଜାଣେ ।

ପଇସା-କଉଡ଼ି ଲାଗି କିଛି ଚିନ୍ତା ନାହିଁ । ସବୁ ତାର ବିଦ୍ୟାର ଗୁଣ ପରା ! ଆଜକାଲି କଲେଜ ପିଲାମାନେ ଭାରି ଦେଶହିତୈଷୀ ହେଲେଣି । କୋଉଠି ବଢ଼ିରେ ଭାସିଗଲା, କୋଉଠି କାଳପଡ଼ିଲା, କୋଉଠି ଝଡ଼ାକୋଇ ଲାଗିଲା, ଏଣ୍ଟ ସବୁ ଖୋଜି ଖୋଜି ନିଜେ ଭିକ ମାଗି ପରର ଉପକାର କରୁଛନ୍ତି । ନିଜର ପଛକେ ଯେତେ କ୍ଷତି ହେଉ, ଜୀବନ ଯାଉ, ପରର ଉପକାର, ଦେଶର ମଙ୍ଗଳ— ଏଥିରେ ସେମାନେ ଭାରି ଲାଗିଛନ୍ତି । ଏବେ ଶୁଣିଥିଲି, ପିଲାଏ ସବୁ ସଭା କରି ନିୟମ କରିଅଛନ୍ତି କି ବାହାଘରରେ ଆଉ ପଣ କରିବେ ନାହିଁ କି ଜବାବପତ୍ର କରିବେ ନାହିଁ ।”

ସମସ୍ତେ ଏ ପର୍ଯ୍ୟନ୍ତ ମଝିଦରିଆରେ ଭାସୁଥିଲେ; ବଣ୍ଟୁ କଥାରେ କୂଳକିନାରା ମିଳିଲା । ଶ୍ୟାମଘନ ନିଜେ ଯାଇ ବଣ୍ଟୁଙ୍କୁ କେତେ ପ୍ରଶଂସା କରି କଥା ବୁଝିଆସିଲେ । ସଙ୍ଗେ ସଙ୍ଗେ ସୁଆରି ପଠାଇ ବଣ୍ଟୁକୁ ଘରକୁ ନେଇଆସିବେ । ରାତିଏ ରାତିଏ ମଙ୍ଗଳନ ଶେଷ ହେଲା । ସକାଳ ହେଲାବେଳକୁ ବଣ୍ଟୁ ହଳଦୀ ଲଗେଇ, ଗହଣା ନାଇ ବର ହୋଇ ବିରାଜମାନ । ଗୁରୁବାର ବାହାଘର । ଶ୍ୟାମଘନବାବୁ ଚାକିରିଆ ଲୋକ । ସ୍ୱାଙ୍କ ଏକାବାଗିଆ ସ୍ୱଭାବ ଦୋଷରୁ ସେରସ୍ତାଦାର ସଙ୍ଗରେ ଅପଡ଼ । ବାହାଘର ପାଇଁ ଛୁଟି ଦରଖାସ୍ତ ନାମଞ୍ଜୁର ହୋଇଛି । ଏଡ଼େ ବଡ଼ ବାହାଘରଟାରେ ବାଧ୍ୟ ହୋଇ କଚେରି ବାହାରିଲେ । ସକାଳିଆ କଚେରି । ୭ଟା ବେଳେ ଘରୁ ବାହାରିବା ବେଳକୁ କହି ଆସିଲେ ଯେ ସେ ଜଲଦି ଫେରି ଆସିବେ ।

ବେଳ ୯ଟା ବେଳକୁ କଚେରିରୁ ବାହାରି ହଠାତ୍ ମନରେ ହେଲା, “ଆଜି ତ ଗେଜେଟ୍ ପାଳି, ଟିକିଏ ଦେଖିଆସେଁ, କଣ

ହୋଇଛୁ ।" ଯେଉଁ କର୍ମଚାରୀ ପାଖରେ ଗେଜେଟ ଥିଲା, ସେ ଦେଖି ପଚାରିଲେ, "କି ଶ୍ୟାମବାବୁ, ଆଜି ପରା ଆପଣଙ୍କ ଝିଅର ବାହାଘର ? କୋଉଁଟି ଆଇ.ଏ. ପରୀକ୍ଷା ଦେଇଛି ପରା ? କଣ ହୋଇଛୁ ? ତା' ନାଁ କଣଟି ? ଫଳ ବାହାରିଛୁ, ଦେଖିବା ।" ଏହି ଅଫିସରଟି ଜାଣନ୍ତି ନାହିଁ ଯେ ଶ୍ୟାମବାବୁ ଇତିମଧ୍ୟରେ ଏତେ କାଣ୍ଡ କରି ସାରିଲେଣି । ବାବୁ ଟିକଏ ଅପ୍ରସ୍ତୁତ ହେଲା ପରି ଛିଡ଼ା ହୋଇ ପରେ ଧୀରେ ଧୀରେ କହିଲେ କି "ଚନ୍ଦ୍ରଶେଖର ଦାସ" । ଅଫିସର ଗେଜେଟ ଖୋଲି ଦେଖିଲେ । କିଛିକ୍ଷଣ ପରେ କାଗଜକୁ ଚାହିଁ ଚାହିଁ କହିଲେ, "କାହିଁ, ଫାଷ୍ଟ ଡିଭିଜନରେ ତ ନାହିଁ !"

ଶ୍ୟାମ—କୋଉ ଡିଭିଜନରେ ନାହିଁ ?

ଅଫିସର ନ ଶୁଣିଲା ପରି ଗେଜେଟ୍ ଦେଖିବାକୁ ଲାଗିଲେ । କିଛିକ୍ଷଣ ପରେ ଚୌକିରେ ସିଧା ହୋଇ ବସିପଡ଼ି କହିଲେ,"ହଁ— ଦାସ ଚନ୍ଦ୍ରଶେଖର, ରେଭେନ୍‌ସା କଲେଜ, କଟକ ।"ଶ୍ୟାମଘନବାବୁ ସ୍ତମ୍ଭିତ ହୋଇ ଛିଡ଼ା ହୋଇ ରହିଲେ । ଅଫିସର କହିଲେ,"ବେଶ ବେଶ୍, ବଡ଼ ସୁଖର କଥା ।" ଶ୍ୟାମଘନବାବୁ ଗୋଟିଏ ଦୀର୍ଘ-ନିଶ୍ୱାସସମ୍ବଳିତ "ହୁଁ"ଟିଏ ମାରି ଧୀରେ ଧୀରେ ସେ ଘରୁ ଚାଲି ଆସିବାବେଳେ ଅଫିସର ଚକିତ ଭାବରେ ତାଙ୍କୁ ଚାହିଁରହିଲେ । କଚେରୀରୁ ବାହାରି ଶ୍ୟାମଘନବାବୁ ବରାବର ପଶ୍ଚିମମୁଖା ଷ୍ଟେସନ ଆଡ଼କୁ ଚାଲିଲେ । ଦଶଟା ବେଳ ପାସେଞ୍ଜରରେ ସୋରୋକୁ ଖଣ୍ଡିଏ ଟିକଟ୍ କାଟି ବସିଲେ । କେହି ଜାଣିଲେ ନାହିଁ । ଗାଡ଼ି, ବେଳ ଏଗାରଟା ସରିକି ସୋରୋରେ ପହଞ୍ଚିଲା । ଶ୍ୟାମଘନବାବୁ ଗାଡ଼ିରୁ ଓହ୍ଲାଇ ବରାବର ପାଟଣାପୁର ସଡ଼କରେ ଚାଲିଲେ । ପ୍ରାୟ ଦିନ ଗୋଟାକ ବେଳକୁ ଚନ୍ଦ୍ରୁଙ୍କ ଘରେ ହାଜର । ଚନ୍ଦ୍ରୁର ବାପା ଦାଣ୍ଡ-

ବଙ୍ଗଳରେ ବସିଥିଲେ । ଶ୍ୟାମବାବୁ ଏକାବେଳକେ ଯାଇ ତାଙ୍କ ଗୋଡ଼ଧରି କାନ୍ଦ ପକାଇଲେ । ଯେତେ ପଚାରିଲେ, କିଛିକ୍ଷଣ ସେ କଥା କହିପାରିଲେ ନାହିଁ । ଶେଷରେ କହିଲେ ଯେ "ସବୁ ମୋର ଦୋଷ—ଏତେ କାଣ୍ଡ ମୁହିଁ କଲି । ମୋହର କପାଳର ଦୋଷ, ମୋହର ନବୁଦ୍ଧିତାର ଦୋଷ । ତମେ ମୋତେ କ୍ଷମା କର, କ୍ଷମା କର । ମୋ ଅପରାଧ ଧର ନା, ମୁଁ ଗୋଡ଼ ଧରି ମାଗି ନେଉଛି ।" ଚନ୍ଦ୍ରର ପିତା କହିଲେ, "ଛି, ଛି, ଇଏ କି କଥା ! ଆପଣ ଏତେ ବ୍ୟସ୍ତ ହୁଅନ୍ତୁ ନାହିଁ । କଥା କଣ କହନ୍ତୁ ।" ଶ୍ୟାମଘନବାବୁ କହିଲେ, "କଥା ଆଉ କଣ କହିବି ? ନିଆଁ ଆଉ ପାଉଁଶ ! ମୋତେ ଏତେ ହାଲ କରିବା ଲାଗି କିଏସେ ମିଛ ଟେଲିଗ୍ରାମ୍ ଖଣ୍ଡେ ଦେଲା, ହଠାତ୍ ରାଗରେ ମୁଁ ତମ ପାଖକୁ ଟେଲିଗ୍ରାମ୍ କରିଦେଲି ।" ଏହି କଥା ଶୁଣି ସେହିଠାରେ ଥିବା କରଣସାଆନ୍ତମାନେ କହି ଉଠିଲେ, "ଓହୋ ! ଯାଙ୍କର ଏତେ ରାଗ, ଆମର ଆଉ ରାଗ ନାହିଁ ।" କିଏ କହିଲା, "ବାହାଘର ବନ୍ଦକରି ଦବାରେ ଆମ ଚୁଲିରୁ ହାଣ୍ଡି ଗଡ଼ିପଡ଼ିଲା !" କିଏ କହିଲା, "ତମ ଝିଅ ଦେହରେ ନାଚ ମରିଛି, ଆମକୁ ଆଉ କନିଆ ମିଳିଲା କି !" କିଏ କହିଲା, "ଆମ ପୁଅ ଅଭେଡ଼ା ରହିଗଲା ପରି !" ମାମଲତ୍‌କାର ସାଆନ୍ତ କହିଲେ କି "ଅଦାଲତରୁ ସମନ ପାଇଲେ ଭ୍ରାବ ଜାଣିବ ।" ଏହିପରି ଯାହା ମନକୁ ଯାହା ଆସିଲା, ସେ ତାହା କହିଗଲା । ଶେଷରେ ଚନ୍ଦ୍ରର ବାପା ସମସ୍ତ ହାଲ ବୁଝି ଓ ଶ୍ୟାମଘନବାବୁଙ୍କର ଦୋଷ ନ ଥିବାର ଜାଣି ଏବଂ ତାଙ୍କ କାକୁକ୍ତିରେ ଦୟାର୍ଦ୍ର ହୋଇ ପୁନରାୟ ବାଲେଶ୍ୱରକୁ ବାହାରିବାର ଠିକ୍ କଲେ । ବରଯାତ୍ରୀମାନେ ପ୍ରଥମେ ଖୁବ୍ ଆପତ୍ତି କରିଥିଲେ, କିନ୍ତୁ ବରକର୍ତ୍ତାଙ୍କ ଇଚ୍ଛା ଓ ଶ୍ୟାମଘନବାବୁଙ୍କର ଗୋଡ଼ହାତ ଧରା ଦେଖି ସମସ୍ତେ ରାଜି ହେଲେ । ସମସ୍ତ ପ୍ରାୟ

ଅଳଲ ଥିଲା । ବେଗାବେଗି ସମସ୍ତେ ବାହାର ପଡ଼ିଲେ । ସୋରେରେ ଅହଣ୍ଟାବେଳକୁ ମୁହଁସଞ୍ଜ ହୋଇଗଲା; କିନ୍ତୁ ୭ଟା ପାସେଞ୍ଜର ଗାଡ଼ି ଧରିବାକୁ ଢେର ସମୟ ଥିଲା ।

ଏଣେ ଶ୍ୟାମଘନବାବୁ ସୋରେ ଆସିଲେ ବୋଲି କେହି ଜାଣନ୍ତି ନାହିଁ । ଦିନ ଗୋଟାକବେଳକୁ ସମସ୍ତେ ଉଦ୍‌ବିଗ୍ନ ହୋଇ ଖୋଜାଖୋଜି କଲେ । କଚେରି ବନ୍ଦ ହୋଇ ସାରିଲାଣି । ବଜାର ଘାଟ, ଅମଲା, ଫଇଲଙ୍କ ବସା, ସାଇ, ସହର କୁଆଡ଼େ ନାହାନ୍ତି । ଶେଷରେ ଥକି ରହିଲେ । ଘରେ ବାହାଘର, ବର ଆସି ବସିଛି, କନ୍ୟାକର୍ତ୍ତାଙ୍କର ଦେଖାନାହିଁ । ଏଣେ ସାଇରେ ସଞ୍ଜ ବସିଲା, ଶଙ୍ଖ ବାଜିଲା । ବାହାଘରଆ ଘର; ଶଙ୍ଖଟିଏ କି ମହୁରୀଟିଏ ବି ବାଜିବାକୁ ନାହିଁ । ଠାକୁରବାଡ଼ିମାନଙ୍କରେ ସନ୍ଧ୍ୟାଆରତି ଘଣ୍ଟା ବାଜିଲା, ତେବେ ବି ଶ୍ୟାମଘନବାବୁ ଆସିଲେ ନାହିଁ । ବେଦୀ ବନ୍ଧା ସରିଛି; ନାହାକ, ପୁରୋହିତ ଆସି ରୁହିଁ ବସିଛନ୍ତି । ଘରେ କିଛିମାତ୍ର ଗୋଳମାଳ ହବାକୁ ନାହିଁ । କନିଆଁ ବି କାନ୍ଦୁନାହିଁ, କେବଳ ଦୁଇ ଚାରି ଜଣ ଦୂରବନ୍ଧୁ ନଟପର ହେଉଛନ୍ତି ।

ବଶୁର ମନରେ ନାନାରୂପ ସନ୍ଦେହ ହେବାକୁ ଲାଗିଲା । ସେ ନିଜେ ଯାଇ ଶ୍ୟାମଘନବାବୁଙ୍କ ସ୍ତ୍ରୀଙ୍କୁ କହିଲା ଯେ "ବାବୁ ତ ଆସିଲେ ନାହିଁ, ଏଣେ ବେଳ ଉତ୍ତୁର ହୋଇଯାଉଛି – ପୁରୋହିତ ବ୍ରାହ୍ମଣ ଆସିଲେଣି, କାମ ଆରମ୍ଭ କରି ଦିଅନ୍ତୁ ।" ଶ୍ୟାମଘନ-ବାବୁଙ୍କ ସ୍ତ୍ରୀ କହିଲେ, "ମୁଁ କଣ କରିବି ? ସିଏ ତ ତାଙ୍କର କୁଆଡ଼େ ରହିଲେ, ମୁଁ—।" ବଶୁ ବାଧାଦେଇ କହିଲା, "ତେବେ ମୋତେ କଣ ଅପମାନ ଦେବାକୁ ଆଣିଥିଲେ ? ମୁଁ ଆଉ ଏଥିରେ କଣ କରିବି ! ଝିଅ ତମର ଥାଉ । ଘରେ ଥିବା ପାହିଲେ ଆଉ କିଏ

ଯାହାହେବ ? ଘରରେ ବି ଆଉ କିଏ ଆସିବ ? ମୁଁ ତମରି ଲାଗି ଏକା—ଏ ବିପଦ ଦେଖି ଉପକାର କରିବାକୁ ଆସିଥିଲି—ତା—ତମର ଇଚ୍ଛା—ମୋତେ ଆଉ ଦୋଷ ଦେବ ନାହିଁ ।” ବିପଦ ଉପରେ ବିପଦ, ଉଦ୍‌ବେଗ ଉପରେ ଉଦ୍‌ବେଗ, ମାଇକିନିଆ ଲୋକ । ବିଶୁର ଏପରି କଥା ଶୁଣି ଡରିସି ଗଲେ । କହିଲେ, “ହଉ, ସେ ଆଉ ବ୍ୟସ୍ତ ହୁଅନ୍ତୁ ନାହିଁ, ଝିଅର ନାନ୍ଦୀମୁଖୀଶ୍ରାଦ୍ଧ ହେବାକୁ ଆରମ୍ଭ ହେଉ; ଏହା ଭିତରେ ବାବୁ ଆସିଲେ ତ ଆସିଲେ, ନୋହିଲେ ଯାହା ହେବ ଦେଖିବା । ଝିଅ ତ ଆଉ ରହିବ ନାହିଁ !” ବିଶୁ ଟିକିଏ ଆଶ୍ୱସ୍ତ ହୋଇ ଫେରିଆସିଲା, କିନ୍ତୁ ମନଟା ଗୋଳାଇ ଘାଣ୍ଟି ହେଉଥାଏ ।

ଶ୍ୟାମଘନବାବୁ ବର ଓ ବରଯାତ୍ରୀମାନଙ୍କୁ ନେଇ ରାତି ଘ୯ଣ୍ଟା ବେଳକୁ ବାଲେଶ୍ୱର ଷ୍ଟେସନରେ ପହଞ୍ଚିଲେ । ଗାଡ଼ି କରାଇ ଦେଇ ସମସ୍ତଙ୍କୁ ପଛରେ ଆସିବାକୁ କହି ନିଜେ ଖଣ୍ଡେ ଗାଡ଼ିରେ ଆଗେ ବାହାରିଗଲେ । କଥା ହେଲା—ବରଯାତ୍ରୀମାନେ ବରକୁ ନେଇ ମୋତିଗଞ୍ଜ ବଜାର ବାଟେ ଆସିବାବେଳକୁ କିଛି ଗ୍ୟାସ୍‌ବତି ଭଡ଼ା କରି ଆଣିବେ । ଇତିମଧ୍ୟରେ ଶ୍ୟାମବାବୁ ଘରକୁ ଯାଇ ଆଉ ସବୁ କଥା ସଜଲ କରିଥିବେ ।

ଶ୍ୟାମବାବୁ ଘରେ ଆସି ପହଞ୍ଚି କାହାରିକୁ କିଛି କହିଲେ ନାହିଁ । ବିଶୁ ବର ହୋଇ ବସିଥିଲା—ତାହାର ପାଖ ଦେଇ ଚାଲିଗଲେ । କେବଳ ତାଳର ଜୋଉକୁ କଣ ଫୁସ୍‌ଫୁସ୍ କରି କହିଦେଲେ ଓ ବେଦୀ ପାଖରେ ଯାଇ ପୁରୋହିତ କାନରେ କଣ କହିଆସିଲେ । ସଞ୍ଜବେଳକୁ ପ୍ରାୟ ନାନ୍ଦୀମୁଖୀଶ୍ରାଦ୍ଧ ଆରମ୍ଭ ହେଲାଣି । ରାତି ବାର ବାଜିଲା, ତେବେ ବି ସରିଲା ନାହିଁ । ଶ୍ୟାମବାବୁ

ଘର ଭିତରେ ଥାଆନ୍ତି । ବଶୁ ବାହାରୁ ବ୍ୟସ୍ତ ହୋଇ ଯାହା ହାତରେ କହି ପଠାଏ, ସେ ଆସି କହେ ଯେ କନିଆର ବେଦୀ ପାଖର କାମ ସରିନାହିଁ । ବଶୁ କ୍ଷେପ ହୋଇ ବସି ରହିଥାଏ ।

ବରଯାତ୍ରୀମାନେ କଥାର ଅନୁସାରେ ମୋତିଗଞ୍ଜରୁ ଗ୍ୟାସ ଆଲୁଅ ଭଡ଼ା କଲେ । ଆଲୁଅ ଜଳିବା ପାଇଁ ଡେରି ହେଲା, ବର ବସି ରହିଲା । ଇତିମଧ୍ୟେ ରେଷ୍ଟୋକର କିଛି ଢୋଲ ମଧ୍ୟ ଯୋଗାଡ଼ ହୋଇଗଲା । ପାଲିଙ୍କି, ସବାରି କିଛି ମିଳିଲା ନାହିଁ । ବର, ବରଯାତ୍ରୀ ସମସ୍ତେ ଗାଡ଼ିରେ ବସି ବାହାରିଲେ ପ୍ରାୟ ୧୨ଟାରୁ ୧୨॥ଟା ବେଳକୁ । ଶ୍ୟାମବାବୁଙ୍କ ଘର ପାଖରେ ବାଜା ଶୁଭିଲା । × × × × ଆସି ଦେଖିଲେ । ବର ଆସୁଛି । ଶ୍ୟାମଧନବାବୁ × × ପୁରୋହିତଙ୍କୁ ଘେନି ବାଟବରଣ କରିବାପାଇଁ ବାହାରି ଆସିଲେ । କନ୍ୟା ତରଫ ଯେତେ ଲୋକ କେହି କିଛି ବୁଝିପାରିଲେ ନାହିଁ—କପରି ଗୋଟିଏ ଧନ୍ଦାରେ ପଡ଼ିଗଲେ । କିନ୍ତୁ ଏତିକି ବୁଝିଲେ ଯେ ଏ ସାବେକ ବର—ଏହାରି ସାଙ୍ଗରେ ଝିଅର ବାହାଘର ହେବ । ଆଉ କିଛି ଗୋଳମାଳ ରହିଲା ନାହିଁ । ଶ୍ୟାମଧନବାବୁ ଯେତେବେଳେ ବାଟବରଣ କରୁଥିଲେ, କନ୍ୟାପକ୍ଷୀୟମାନେ ବରଯାତ୍ରୀମାନଙ୍କୁ ଘେନି ଗୋଡ଼ ଧୁଆଇ ଘରେ ବସାଇଲେ । ବର ଆସି ନିଜ ଆସନରେ ବସିଲେ । ସେ ଦିନ ଅସୁବିଧାରେ ବରଯାତ୍ରୀମାନଙ୍କୁ ଅନ୍ନବ୍ୟଞ୍ଜନ ଚର୍ଚ୍ଚା ହୋଇ ପାରିଲା ନାହିଁ । ଆଗରୁ ପ୍ରସ୍ତୁତ ଥିବା ଜଳଖିଆ ଖାଇ ସମସ୍ତେ ସନ୍ତୁଷ୍ଟ ହେଲେ । ଏ ଗୋଳମାଳ ଭିତରେ ବଶୁଙ୍କୁ କେହି ଲକ୍ଷ୍ୟ ସୁଦ୍ଧା କରିନାହିଁ । ବଶୁ ଯେ କେତେବେଳେ କୁଆଡ଼ିକୁ ଗଲେ, ତାହା କେହି ଦେଖିଲେ ନାହିଁ । ରାତି ଭିତରେ ଚନ୍ଦ୍ର ସହିତରେ ତିଳର ଯଥାବିଧି ହାତଗଣ୍ଠି

ସମର୍ପଣ, ହୋମ ଆଦି ହୋଇଗଲା । ରାତି ପାହିଲାବେଳକୁ ସାଇ-ପଡ଼ିଶା କହିଲେ, "ଦେଖିଲ ଗୋ, ଯେ ଯାହାର ସେ ତାର ।" ଶୁଣି ତିଳବୋଉ ସକ ସକ ହୋଇ କହିଲେ, "ଯେ ଆଉ ଜନ୍ମରେ ଯାହା ହାଣ୍ଡିରେ ଚଉଳ ପକେଇଛି, ତାର ନ ହୋଇ ଆଉ କାହାର ହବ !"

ଯଥାସମୟରେ ବରକନ୍ୟା ଯାଜ୍ଞପଣ୍ଡିତଙ୍କ ଘେନି ବିଦା ହୋଇଗଲେ । ଏ ବିବାହର ରହସ୍ୟଟା ସହରମୟ ରାଷ୍ଟ୍ର ହୋଇ ପଡ଼ିଲା । ଯେ ଶୁଣିଲା, ସେ କହିଲା, କି ଚନ୍ଦ୍ରୁର ଫେଲ୍ ବିଷୟରେ ମିଛ ଟେଲିଗ୍ରାମ୍‌ଟା ବିଶୁଙ୍କ କାରସାଦି । ଏଣିକି ବିଶୁକୁ ଦେଖିଲେ ବାଟ ଗଲା ଲୋକେ ତା ଅଡ଼କୁ କଣେଇ କଣେଇ ଚାହିଁ ଟିପ୍ପୁର ଟାପର ହୁଅନ୍ତି । ଚନ୍ଦ୍ରୁ ଓ ବିଶୁ ଦୁହେଁଯାକ ଯେ ଯାହାର ପରୀକ୍ଷାର ଫଳ ଆଚ୍ଛା କରି ପାଇଲେ ।

—o—

# ଘାଣ୍ଟି

## କାଳନ୍ଦୀଚରଣ ପାଣିଗ୍ରାହୀ

ପୋଲିସର ଗୋଟାଏ ବଡ଼ ଗୁଣ କି ବଡ଼ ଦୋଷ ହେଲା ଅନ୍ୟକୁ ସନ୍ଦେହ ଆଖିରେ ଦେଖିବା —ଏକା ଆପଣାକୁ ଛାଡ଼ି ଦୁନିଆ ଲୋକଙ୍କୁ ଅପରାଧୀ ପ୍ରମାଣ କରିବା । ନଇଲେ ତାଙ୍କର ପ୍ରକୃତ ଲୋଡ଼ା କଣ ? ପୁଲିସରେ ପଶିବାବେଳେ ଏ ସବୁ କଥା ମୁଁ ଭାବି ନ ଥିଲି ।"ଆଉ ତେବେ କଣ ଭାବିଥିଲେ ?" ଆଶ୍ଚର୍ଯ୍ୟ ହୋଇ ମୁଁ ତାଙ୍କ ମୁହଁକୁ ଚାହିଁଲି ।

"ଆପେ ଅନ୍ତତଃ ନାଗରିକର ଅଧିକାରରେ ରହି ସ୍ୱଚ୍ଛନ୍ଦରେ ଚଳିପାରିବି; ଏତିକି ଭରସା ଥିଲା ମୋର । ତା'ଛଡ଼ା ସବୁରି ଯେମିତି ଆକାଙ୍‌କ୍ଷା ଥାଏ—ଅନ୍ୟ ଉପରେ ଟିକିଏ ହାକିମି ଜାହିର କରିବା—ଅନ୍ୟ ଠାରୁ ଆଜ୍ଞା ଅବଧାନ ଦି'ପଦ ଶୁଣିବା ।"

"ସେ ଆକାଙ୍‌କ୍ଷା ନ ଥାଏ କାହାର ? ମଣିଷର ତ ସ୍ୱଭାବ ତାହା ?" ମୁଁ ଟିପ୍‌ପଣୀ କଲି ।

"ଫଳ ହେଲା କିନ୍ତୁ ଓଲଟା । ନାଗରିକରେ ରହିବ କଣ— ଖାଲି ସ୍ୱେଚ୍ଛାରେ ଉକେଇତଙ୍କ ମଝିରେ ପଡ଼ି ଆତଙ୍କିତ ହୋଇ ପଡ଼ିଲି । ମୋ ଗୃହପଟେ ଯେମିତି ସେମାନେ ଘେରିଛନ୍ତି ଆଉ ଛକି ରହିଛନ୍ତି

ମତେ; ଟିକିଏ ସୁବିଧା ପାଇଲେ ମୋ ଉପରେ ପ୍ରତିହିଂସା ନେବାକୁ ଛାଡ଼ିବେ ନାହିଁ । କାହିଁକି ନା, କେତେ ଥର ତାଙ୍କ ପିଠିରେ ମୋର ହଣ୍ଟିଂ ଷ୍ଟିକ୍‌ଟା ଚୂନା ହୋଇଯାଇଛି । କେତେ ଗାଳିଗୁଲଜ୍, ବଧା-ଗୋଇଠା —ତା'ର କ'ଣ ସୀମା ଅଛି ? ଅହରହ ସେହିମାନଙ୍କ ଭୟରେ ମୁଁ ଖାରୁ ହୋଇ ପଡ଼ିଲି । ସବୁର ଆଗରୁ ସେ ଭୟକୁ ଘୋଡ଼ାଇ ସାଧାରଣ ମଣିଷ ପ୍ରକୃତି ପାଇବା ସକାଶେ ମୁଁ ଖାଲିମନ୍ତ ଅଭ୍ୟାସ କଲି ନିର୍ମମ କଠୋର ହେବାକୁ ।”

ଚୂଡ଼ାମଣିବାବୁ ନିଜ କଥା ଗପି ଚାଲନ୍ତି, ଆରାମଚୌକି-ଟାରେ ଝୁଲି ଝୁଲି । ଆଉ ମୁଁ ଏକାଗ୍ର ମନରେ ସେ ସବୁ ଶୁଣି ଯାଉଥାଏଁ । ମାତ୍ର ଦୁ'ଟା ବର୍ଷ ହେଲା ସେ ପୁଲିସ ଚାକିରିରୁ ପେନ୍‌ସନ୍ ନେଇ ଆମର ଗାଁ ସେ ମୁଣ୍ଡରେ ଘରତୋଳି ରହିଛନ୍ତି । କିଛି ଜମି ଖରିଦ କରିଥିବା ମଧ୍ୟ ଶୁଣାଯାଏ ।

ଏକୁଟିଆ ଘରଟି । ଚାରିପଟର ଦୃଶ୍ୟ ବେଶ ସୁନ୍ଦର । ଟିକିଏ ଦୂରଛଡ଼ା ହୋଇ ସଙ୍କୋଇ ନଈର ଧୋବଲା ବୋଲି ଗୋଟିଏ ଗହଳିଆ ଆମ୍ବତୋଟା ଭିତରୁ ଆଖି ମିଟି ମିଟି କରୁଛି । ନାଇଲନ ଶାଢ଼ୀର ନେଳୀ ଧଡ଼ି ପରି ସରୁ ପାଣି ସୁଅଟି ଗଛ ଗହଳରେ ମିଶି ଯାଉଛି । ସେଇ ନଈ ଆରପଟେ ଆମ ଗାଁ । ଚୂଡ଼ାମଣିବାବୁ କେଉଁଠୁ ଖବର ରଖିଛନ୍ତି, ମୁଁ ଗଳ୍ପ ଲେଖେଁ । ଆଉ ସେଥିପାଇଁ ମୋତେ ତାଙ୍କର ଡାକରା ।

ନିଜ ଚରିତ୍ର ବର୍ଣ୍ଣନା କରନ୍ତି ଚୂଡ଼ାମଣିବାବୁ—“ହଁ, ନିର୍ମମ କଠୋର ହେବାକୁ ମୁଁ ଏତେଦୂର ଅଭ୍ୟାସ କଲି ଯେ ଶେଷରେ ତାହା ହିଁ ମୋର ଦ୍ୱିତୀୟ ପ୍ରକୃତି ହୋଇପଡ଼ିଲା । ସେଟା ହେଲା ପୁଲିସ୍

ଗୃହକଶରର ବଡ଼ ଗୁଣ କି ନା ! ତାହାର ବଳରେ ମୁଁ ଗୃହକଶରର ସବା ଉପରେ ପାହ୍ୟାକୁ ଉଠିପାରିଲି ।”

“ନିମକହଲଲା କର୍ମଚାରୀ ହୋଇ ଇଂରେଜ ସରକାରଙ୍କଠାରୁ ପଦବୀ-ପୁରସ୍କାର ହାସଲ କରିଥିଲି । ଏବେ ସ୍ୱାଧୀନ ସରକାର ଅମଳରେ ସେସବୁ ବାଏଁ ବାଏଁ ଉଡ଼ିଗଲା ସିନା, ଜାତୀୟ ସରକାର-ଠାରୁ ପୁଲିସ ମେଡେଲରେ ଭୂଷିତ ହୋଇ ମୋର ହୃତଗୌରବ ପୁଣି ଫେରିଆସିଛି ।

ସେଇଟା ହେଲା ଅସଲ ସଚ୍ଚୋଟପଣିଆ । ଆମ ପୁଲିସ ଓ ଅନ୍ୟାନ୍ୟ କର୍ମଚାରୀ ସଚ୍ଚୋଟ ହେବାଟା ଦେଶ ପକ୍ଷରେ ବଡ଼ ଲାଭ । —ମୋ ସମର୍ଥନରେ ସେ ଆହୁରି ଉତ୍ସାହିତ ହୋଇପଡ଼ନ୍ତି । କିନ୍ତୁ ସେହି ଗତାନୁଗତିକ ଅଭିଯୋଗ ମୋତେ ପୁଣି ତାଙ୍କ ମୁହଁରୁ ଶୁଣିବାକୁ ହୁଏ—ଯେଉଁ ଅଭିଯୋଗ-ଆପତ୍ତି ସବୁ କର୍ମଚାରୀଙ୍କ କର୍ତ୍ତା ବିରୁଦ୍ଧରେ ପ୍ରାୟ ଥାଏ ।

“ବୁଝିଲେ ବାବୁ ! ସେ ହେଲା ପେଟପାଟଣା କଥା; ସଚ୍ଚୋଟ ନ ହୋଇ ଯେ ଉପାୟ ନାହିଁ ! ହେଲେ, ପୁଲିସ ଓ ଆସାମୀ ଭିତରେ ଫରକ ନାହିଁ କହିଲେ ଚଳେ । ଦେଶରେ ଶାନ୍ତିଶୃଙ୍ଖଳା ରଖିବା ପାଇଁ ସବୁ ଅଶାନ୍ତି ନିଜେ ମୁଣ୍ଡାଇଲି । ସମସ୍ତଙ୍କୁ ନିର୍ଭୟ, ନିରାପଦ କରିବାକୁ ସବୁରି ଭୟ-ବିପଦ ଆପେ ବରଣ କଲି, କିନ୍ତୁ ପୁଲିସ ଜୀବନଟା ବଡ଼ ହୀନ—ସମାଜରେ ତା’ର ସ୍ଥାନ ବୋଧହୁଏ ଆସାମୀ ଠାରୁ ଉଚ୍ଚରେ ନୁହେଁ । ବୋଧହୁଏ ଅନ୍ୟକୁ ଦୋଷୀ ସାବ୍ୟସ୍ତ କରିବା, ପୁଣି ତେଣୁ ବିଚାରିବା ଫଳରେ ପୁଲିସ ନିଜେ ଦୋଷୀ-ହୋଇପଡ଼େ । ବାଇବେଲ୍‌ରେ ଅଛି ପରା—ଅନ୍ୟକୁ ବିଚାର କର ନାହିଁ, ତା ହେଲେ ନିଜ ବିଚାର ଲୋଡ଼ା ହେବ ।

"ନିଜ ବିଷୟରେ ଆପଣ ଅତି ବେଶି ସଚେତନ"—ମୋ ମନ୍ତବ୍ୟରେ ସେ ବିଚଳିତ ହୁଅନ୍ତି ନାହିଁ ।

"ହୋଇପାରେ, ଆପଣଙ୍କ କଥା ମୁଁ ମାନିନେଲି । ତେବେ ନିଜ ବିଷୟ ଛଡ଼ା ଆଉ କିଏ ଯେ କାହା ବିଷୟରେ ବେଶି ସଚେତନ, ସେମିତି ମଣିଷ ମୋର ନଜର ବାହାରେ । ଆସିଲୁ ମା' ସୁଧା ! ବାବୁଙ୍କୁ କପେ ଚାହା ଦେଇଗଲୁ ।" ଚୂଡ଼ାମଣିବାବୁଙ୍କର ଯୁବତୀ-କନ୍ୟା ସୁଧା ତା'ର ସମ୍ବଲପୁରୀ ଶାଢ଼ୀର ଅଞ୍ଚଳ ଦୋହଲାଇ ଦୁଇଟା କପ ସରଗରମ ଚାହାରେ କେଟଲି ସାଥିରେ କିଛି ଭଜା ପକୋଡ଼ି ଆଣି ରଖିଦିଏ । ସୁଧାର ବର୍ଣ୍ଣ ଗୌର ନ ହେଲେ ବି ଗଢ଼ଣଟି ବେଶ୍ ଉଜ୍ଜ୍ୱଳ । ତେବେବି ଦେଖି ମନେହୁଏ, ବିଧାତା ଯେମିତି ମନଲାଖି ମୂର୍ତ୍ତିଟିଏ ଖାଲି ଗଢ଼ିଦେଲେ, ରଙ୍ଗ ଦେବାକୁ ମାନି ପାଶୋରି ପକାଇଲେ । କିନ୍ତୁ ଚୂଡ଼ାମଣିବାବୁଙ୍କ ଘରର ନିର୍ଜନ ପରିବେଶ ଭିତରେ, ବଣଜଙ୍ଗଲର ମିଳାଭ ପ୍ରକୃତି-ଭୂମିକାରେ ସୁଧାର ଯେପରି ଗୋଟିଏ ସାମଞ୍ଜସ୍ୟ ଥିଲା, ଓମାରଖେୟାମଙ୍କ ସାକୀ, ସୁରା ଓ କବିତା ପୁସ୍ତକର ସାମଞ୍ଜସ୍ୟ ପରି ।

"ସେଇ ମୋର ଝିଅ ସୁଧା, ବୁଝିଲେ ବାବୁ ! ଏଥର ଏମ୍. ଏସ-ସି. ଦେଉଛି ଫିଜିକ୍ସରେ । ଝିଅମାନେ ସାଏନ୍ସ ପଢ଼ି ଆମ ଦେଶରେ କରିବେ କଣ କେଜାଣି ! ତେବେ ସୁଧାର ଇଚ୍ଛା—ସେ ଜଣେ ମାଡାମ କ୍ୟୁରୀ ହେବ ।" ସୁଧା ସେ କଥାକୁ ଯେ ନା ପସନ୍ଦ କରୁଛି, ସିଆଡ଼କୁ ତାଙ୍କର ଭ୍ରୂକ୍ଷେପ ନାହିଁ । ତା ପରେ ମୋର ପରିଚୟ ମଧ୍ୟ ସେମିତି କରାଇ ଦିଅନ୍ତି ନିଜ ଝିଅ ସାଥିରେ—"ଏଇ ବାବୁଙ୍କ ନାମ ଶ୍ରୀ ଖଗେଶ୍ୱର ଚମ୍ପତି । ଓଡ଼ିଆରେ 'ଚମୂପତି' ଶବ୍ଦଟିକୁ କି ସୁନ୍ଦର ଭାବରେ ସଂକ୍ଷିପ୍ତ କରି ଦିଆଯାଇଛି, ଦେଖିଲୁ

ନା ! ଏଥିରୁ ଓଡ଼ିଆ ଭାଷାଟା ସମୃଦ୍ଧ ନୁହେଁ ବୋଲି କିଏ କହିବ ? କିନ୍ତୁ 'ଖଗେଶ୍ୱର' ନାମଟା ବାବୁଙ୍କ ଚେହେରାକୁ ଶୁହାଁ ହେଲା ନାହିଁ । ଶବ୍ଦଟା କେମିତି କଟିମିଟିଆ ଶୁଣାଯାଏ । ନୁହେଁ କି ?"

ମୁଁ ହସିଲି—ଆତ୍ମରକ୍ଷାର ହସ । ମତେ ସେମିତି ଉଦ୍ଧାର କରିବାକୁ ଆଗେଇ ଆସେ ସୁଧା । "ତୁମ କଥାରେ କିଛିମାତ୍ର ଯୁକ୍ତି ନାହିଁ, ବାପା ! ପିଲାର ଚେହେରାକୁ ଦେଖି କେହି ବାପ-ମା ନାଁ ଦେଇ ନ ଥାନ୍ତି । ତୁମେ ଭଲା ମୋର ରୂପ ଅନୁସାରେ ନାଁ ଦେଇଥିଲ ?" ଚୂଡ଼ାମଣିବାବୁଙ୍କ ଉତ୍ତରକୁ ଅପେକ୍ଷା ନ କରି ସେ ମୋ ଆଡ଼କୁ ବୁଲେଇ, ଆଉ କପ ଭିତରେ ଚାହା ଢାଳିଦିଏ—"ଆପଣ ଗଳ୍ପ ଲେଖନ୍ତି ନା ? ଆପଣଙ୍କ ଗଳ୍ପ ମୁଁ ପଢ଼ିଛି ।" ଖୁବ୍ କାଟ୍-ଛାଟ ସଂକ୍ଷିପ୍ତ ମନ୍ତବ୍ୟ ।

କେଉଁ ଗଳ୍ପ ? କିପରି ଲାଗିଲା ? ଏ ସବୁ ପ୍ରଶ୍ନ ପଚାରିବାକୁ ସାହସ ପାଏ ନାହିଁ ମୋର । ମନେହୁଏ, ସେମିତି ସୁଧା ମୋ ଗଳ୍ପର ସବୁ ତ୍ରୁଟି ଆଗରୁ ଜାଣିନେଇଛି । ଚାହାର ଗରମ ବାମ୍ପରେ ନାସିକା ଆପ୍ୟାୟିତ ହୁଏ । କିନ୍ତୁ ମୋର ସୁରା, ସାକୀ ଓ କବିତା ଫୁସ୍ତକରି ସ୍ୱପ୍ନ ଏଇ ବୈଜ୍ଞାନିକଗୃହିଣୀଙ୍କ ସାମ୍ନାରେ ଛନ୍ଦୋହୀନ ହୋଇପଡ଼େ ।

"ଖଗେଶ୍ୱରବାବୁଙ୍କୁ ମୁଁ ସେଇଥିପାଇଁ ଡାକି ଆଣିଛି, ଜାଣୁ ତ ସୁଧା—ସେଇ ଗଳ୍ପଟା ଲେଖିବା ସକାଶେ । ଘଟଣାଟା କେଉଁଠାଠେ ହେଲେ ପ୍ରକାଶ ନ କରିବା ଯାକେ ମୋ ବନ୍ଧୁଙ୍କ ଜୀବନରେ ତ ଶାନ୍ତି ନ ଥିଲା । ତାଙ୍କ ବୋଝ ସେ ମୋ ଉପରେ ଲଦି ଦେବା ଦିନୁ ମୋତେ ମଧ୍ୟ ରାତିରେ ନିଦ ନାହିଁ ।" ଚୂଡ଼ାମଣିବାବୁ ଚାହା କପରେ ଓଠ ବୁଡ଼ାନ୍ତି ।

"ଆଚ୍ଛା ବାପା, କାହାକୁ ଏମିତି କଳ୍ପନା କରି କ'ଣ ଗଳ୍ପ ଲେଖାଯାଏ ?" ସୁଧାର ଆଖି କୌତୁକରେ ନାଚଉଠେ । "କଳାକାରଙ୍କୁ ବନ୍ଧନ କଲେ ଯେ କଳା କ୍ଷୁଣ୍ଣ ହୁଏ !"

"ଆରେ, ତୁ କଣ ଜାଣିଛୁ ଗଳ୍ପ ଲେଖିବାର କୌଶଳ ? ସେ କଥା ସିନା ଗାଳ୍ପିକ କହିବେ ! କ'ଣ ବାବୁ ! ଏମିତି ଗୋଟାଏ ଗଳ୍ପ ଲେଖିବାକୁ ଚେଷ୍ଟାକଲେ କ୍ଷତି କ'ଣ ?"

ତାଙ୍କୁ ସମର୍ଥନ ଜଣାଇ ମୁଁ କହିଲି, "ନା, କ୍ଷତି କିଛି ନାହିଁ —ଆପଣ କହନ୍ତୁ ।"

ସୁଧା କେତେବେଳେ ଅପସରି ଯାଏ । ଚୂଡ଼ାମଣିବାବୁଙ୍କର ସାତ ଆଠ ବର୍ଷର ସବା ସାନ ପୁଅଟି ଆସି ତାଙ୍କ ପାଖରେ ଠିଆହୁଏ; ବାପାଙ୍କ କଥାରେ ବାଧାଦେବାକୁ ଏଣୁ ତେଣୁ ପ୍ରଶ୍ନ ପଚାରେ । ବନ୍ଧା ହୋଇଥିବା ଆଲସେସିଆନ କୁକୁରଟାର ମୁଣ୍ଡକୁ ଆଉଁସି ଦିଏ । ମୋତେ ଚାହିଁ ନିଜର ଉପସ୍ଥିତି ଜଣାଏ । ପୁଅର ବାଧାକୁ ନ ମାନି ଚୂଡ଼ାମଣିବାବୁ କହିଚାଲନ୍ତି, ତାଙ୍କ ପୁଲିସ ଜୀବନର ବିଚିତ୍ର ଅଭିଜ୍ଞତା ।

"ପୁଲିସ ସିନା ଲୋକମାନଙ୍କୁ ନାନା ବିପଦରୁ ଉଦ୍ଧାର କରେ, କିନ୍ତୁ ସେ ଆଗେ ବିପଦରେ ପଡ଼ିଥିଲାବେଳେ କିଏ ତାକୁ ସାହାଯ୍ୟ କରେ, ସହାନୁଭୂତି ଜଣାଏ ? ବରଂ ସମସ୍ତେ ଖୁବ୍ ଖୁସି ହୁଅନ୍ତି ନାହିଁ କି ସେତେବେଳେ ?'

"ସମସ୍ତେ ?"

ମୋ ପ୍ରଶ୍ନର ଉତ୍ତର ଆଗରୁ ସେ ସଜାଡ଼ି ରଖିଥାନ୍ତି ।

"ଓ ହୋ ! ସମସ୍ତେ ନ ହେଲେ ତ ଅଧିକାଂଶ ! ଆପଣ ମୋତେ ସିନା କମ୍ଭା ଆଉ ଯାହା କୁହନ୍ତୁ ପଛେ, ପଚାଶ ବର୍ଷର ଶୁକର ଅଭିଜ୍ଞତା ପରେ ଠିକ୍ ହେଉ—ଭୁଲ ହେଉ, ଗୋଟାଏ ସିଦ୍ଧାନ୍ତରେ ମୁଁ ପହଞ୍ଚି ଯାଇଛି । ତାହାହେଲା, ଯେ ଯାହା ପାରୁ, ଧନ କେଇଟା ମାତ୍ର ମକଚ, ମାଶପିଠି ଚଳିଯିବା ହିଁ ହେଲା ଜୀବନ, ଆଉ ନ ପାରିଲା ଯେଉଁଠି, ସେଇଠି ପ୍ରକୃତ ମରଣ । ପୁଲିସର ମୋଟାବୁଦ୍ଧିରେ ଜୀବନର ଏହି ବ୍ୟାଖ୍ୟା ଶୁଣି ଆପଣ ତ ହସିବେ । କିନ୍ତୁ ଆହୁରି ବେଶି ହସିବେ, ମୁଁ ଯଦି କହେ ଯେ ପୁଲିସ ହାତରୁ ଖସିଯିବା ହିଁ ହେଲା ଜୀବନ । ହଁ, ଖଗେଶ୍ୱରବାବୁ ! ଆପଣ ଆଜି ସାଧୁ ପାଲଟିଛନ୍ତି, ଭଦ୍ରସମାଜରେ ନାମ ଲେଖାଇ ଜେଲ ଭିତରେ ପଶି ନାହାନ୍ତି, କେବଳ ପୁଲିସ ବିଭାଗର ଅପାରଗତା ଯୋଗୁଁ ।"

ଘର ଆଗରେ ଗୋଟାଏ ଡେଙ୍ଗା ଦେବଦାରୁଗଛ ପତ୍ର-ଭୂତ ପରି ଛିଡ଼ା ହୋଇଛି । ତାହାର ଡାଳ କି ଗଣ୍ଡି ଦେଖାଯାଉନାହିଁ; ସବୁ ଘୋଡ଼େଇ ହୋଇ ପଡ଼ିଛି ପତ୍ରରେ । ଆଗରେ ଗୋଟାଏ ଶଙ୍ଖଚିଲ ବସି ଚିତ୍କାର ଛାଡ଼ୁଛି, ବୋଧହୁଏ ଶିକାର ଉଦ୍ଦେଶ୍ୟରେ । ବାଡ଼ିରେ ଯୋଡ଼ାଏ ଦେଶୀ କୁକୁର ଗୋଡ଼ାଗୋଡ଼ି ହୋଇ ଖେଳୁଛନ୍ତି । ତାଙ୍କୁ ଚୁହିଁ ଶିକୁଳିରେ ବନ୍ଧା ଚୂଡ଼ାମଣିବାବୁଙ୍କ ଆଲସେସିଆନଟା ଭୀଷଣ ଗର୍ଜନ କରି ଉଠୁଛି । ସଜାଡ଼ି ନଈର ନାଇଲନ୍ ଶାଢ଼ୀ ଅଗର ନେଳୀ ଧଡ଼ିଟାରେ ପାଶ୍ଚାତ୍ୟ ସ୍ପର୍ଶ କରି ଲଗାଇ ଦେଲଣି । ଚୂଡ଼ାମଣିବାବୁ ଏ ସମସ୍ତର ଯେମିତି ହୋଇଛନ୍ତି, ଏକାଧାରରେ ମୁଖପାତ୍ର ।

"ନେଇ ଆସି ଥୋଇ ଜାଣିଲେ ଗୈଶ୍ୱବଦ୍ୟା ଭଲ"—କଥାଟାକୁ କିଏ କହିଥିଲେ କେଜାଣି—ଯେ କହନ୍ତୁ, ସେ ନିଶ୍ଚୟ

ଜଣେ ପୁଲିସ ବିଭାଗର ଚତୁର କର୍ମଚାରୀ ହୋଇଥିବେ । ନଇଲେ ଚୋରୀ ଯେ ଗୋଟାଏ ବିଦ୍ୟା, ପୁଣି ପୃଥିବୀର କୋଟି କୋଟି ମଣିଷ ଯେ ଏଇ ବିଦ୍ୟାର ସାଧାରଣ ଅଧିକାରୀ—ପୁଲିସ ଛଡ଼ା କଥାଟାକୁ ଆଉ କିଏ କହିବ ?"

"ପ୍ରକୃତରେ ସଂସାରଟା ଏମିତି ଭାବରେ ତିଆରି ଯେ, ପ୍ରତି ମଣିଷକୁ ଏଠାରେ ସିଧା ହେଉ, ବଙ୍କା ହେଉ—କେଉଁ ବାଟରେ ଚୋରି କରିବାକୁ, ଅବା ଖୁଣି, ଡକେଇତି, ହତ୍ୟା—କିଛି ହେଲେ କରିବାକୁ ହୁଏ । ଅପରକୁ ଅପହରଣ ନ କଲେ ନିଜେ ସେ ଅପହୃତ ହୁଏ, ନିଜକୁ ଉପାସ ରହିବାକୁ ପଡ଼େ । ଅନ୍ୟକୁ ନ ମାରିଲେ ଆପେ ବଞ୍ଚିବା ଶକ୍ତ ହୁଏ । ଜଣେ ଗଳ୍ପଲେଖକ ପାଖରେ ଏ ସବୁ କଥା କିଛି ନୂଆ ନୁହେଁ । ଜାଣିତରେ କି ଅଜାଣିତରେ କେବେ କାହାକୁ ନ ମାରି ଆପେ ଜୀଅନ୍ତା ହୋଇ ରହିବା ଅସମ୍ଭବ । ମାରିବାଟା ହେଲା ଦୁନିଆର ନିୟମ କି ନା— !"

ନୂଆ ହୋଇ ଯେବେ ପୁଲିସ ବିଭାଗରେ ମୁଁ ପଶିଥାଏ, ପାଠସାଥୀମାନେ ସେ ଯାକେ ମୋର ଅସଲ ରୂପଟାକୁ ଯେମିତି ଚିହ୍ନି ନ ଥିଲେ । ସେଇଦିନ ଜାଣି ଚିହ୍ନିଲେ । ତାଙ୍କ ଭିତରେ ମୋର ଜଣେ ଘନିଷ୍ଠ ବନ୍ଧୁ, ଅଜକାଲି ଗୁରୁଙ୍କ ଭିତରେ ଯେମିତି ବନ୍ଧୁତା ବାନ୍ଧିବା ଖୁବ୍ ବେଶୀ ଦେଖାଯାଏ ନାହିଁ ।

"ଏଠାରେ ତା'ର ନାଁ ପ୍ରକାଶ କରିବା ନିରାପଦ ନୁହେଁ । ଗଳ୍ପରେ କି ନାମ ଦେବେ କହନ୍ତୁ, ସେଇ ନାଁଆରେ ତା' କଥା ମୁଁ କହିବ ।"

"ଧରନ୍ତୁ, ତାଙ୍କ ନାମ ମୋହନ ।"

"ବାଃ, ବେଶ ନାଁଟିଏ ତ ! ନ ହେଲେ କ ଆପଣ ଗାଳ୍ଟି କ ! ହଁ ବାବୁ, ସେଇ ମୋହନ ଆସି ମୋତେ କହିଲା, କରେ ତୋତେ କ'ଣ ଆଉ କିଛି ଚାକିରି ମିଳନ୍ତା ନାହିଁ ନା କଣ ? ଏଇ ଦେଶ-ଦ୍ରୋହୀ ନକୁଛିଆ ଚୋରଧରା କାମଟା କଲୁ । ଚୋରଧରାଟା ଯେ କଦାପି ଦେଶଦ୍ରୋହୀ କାମ ନୁହେଁ, ଏ କଥା ମୁଁ ବୁଝାଇବାକୁ ଗଲିନାହିଁ ତାକୁ । କାରଣ ସେତେବେଳେ ବିଦେଶୀ କବଳରୁ ଉଦ୍ଧାର ପାଇବା ପାଇଁ ଦେଶସାରା ମାତି ଉଠିଥାଏ; ଆଉ ବିଦେଶୀ ସରକାରଙ୍କ ଅସଲ ହାତବାରସି ହୋଇଥାନ୍ତି ସ୍ୱଦେଶୀ ଅମଲା ପୁଲିସମାନେ । ହଁ, ମୋ ବନ୍ଧୁର କ'ଣ ନାଁ ଦେଇଥିଲଟି ବାବୁ ?"

"ମୋହନ !"

"ଆଚ୍ଛା, ଆଚ୍ଛା···ସେଇ ମୋହନ ଥିଲା ଜଣେ କଲେଜ ଭିତରେ ନାମଜାଦା ଦେଶପ୍ରେମୀ ଯୁବକ । ଖଦଡ଼ ଛଡ଼ା ତା' ଦେହରେ ଆଉ କିଛି କେବେ କେହି ଦେଖି ନାହିଁ । ମୁହଁରୁ ତା'ର ଦେଶ, ଜାତି ଛଡ଼ା କେବେ କେହି ଅନ୍ୟ ବକ୍ତୃତା ଶୁଣି ନାହିଁ, ସାହସିକତାର ଦୃଷ୍ଟାନ୍ତ, ବୁଝିଲେ ? ତା' ମନ୍ତବ୍ୟରେ ମୁଁ ଝେପ ତୋକି କହିଲି, "ତୁ ଯେବେ ଏମିତି କହିବୁ, ତା'ହେଲେ ଯେ ମୁଁ ନାଚାର । ମୋ ଅବସ୍ଥା କଣ ତୋତେ ଅଛପା ଅଛି କି ? ତୋ ଭଳି ସମ୍ବଳ ମୋର କାହିଁ କହିଲୁ ? ଚାକିରି ନ କରି ମୁଁ ରହିପାରିବି କିପରି ?"

ତା'ର ମୋଟ ବାହାଟାକୁ ମୋ କାନ୍ଧରେ ଆଣି ସେ ଲଦି-ଦେଲା —"ଆଚ୍ଛା ଭାଇ, ଯା' ତେବେ ଗୋଟେ ବଡ଼ ପୁଲିସ ଅଫିସର ହ । ମାତ୍ର ଖବରଦାର ! ତୋ ସାଥିରେ ମୋର ଭେଟ ହୋଇପାରେ କେତେଥର—ରାସ୍ତା ଉପରେ କି କଚେରି କାଠଗଡ଼ାରେ ।"

"କଲେଜ ଭିତରେ ବାହାରେ ସେ ଯେଉଁ ନେତୃତ୍ୱ ନେଇ-ଥିଲା, ପୁଲିସ ସମ୍ପର୍କରେ ଆସିବାଟା ତା ପକ୍ଷରେ ଆଦୌ ବିଚିତ୍ର ନ ଥିଲା । ସେ ଭଳି ପରିସ୍ଥିତିରେ ମୁଁ ନ ପଡ଼ିବା ପାଇଁ ଉଚ୍ଚସ୍ୱରରେ ଚିନ୍ତାକଲି"—ଭଗବାନ ତାହା ନ କରନ୍ତୁ ।

"ଭଗବାନ ତାହା କଲେ ନାହିଁ । କ'ଣ ମୋ ବନ୍ଧୁଙ୍କ ନାମ ଦେଇଥିଲେଟି ବାବୁ ? ମୋହନ ପରା ! ହିଁ, ମୋହନର ଦେଶପ୍ରେମ ଓ ଜାତୀୟତା କିଛିକାଳ ଇଂରେଜ ସରକାର ଖାତାରେ ବଦନାମ ଅର୍ଜି ଶେଷରେ କେବଳ ଖଦଡ଼ ପିନ୍ଧାରେ ହିଁ ଅଟକିଗଲା । ବ୍ରାହ୍ମଣମାନଙ୍କ ବ୍ରହ୍ମତ୍ୱ ଯେମିତି ଖାଲି ପଇତାରେ ଆଜି ସୀମାବଦ୍ଧ । ରାସ୍ତାରେ ପିକେଟିଂ କରି କେତେ ଥର ସେ କଚେରୀ ଦୁଆରକୁ ହାତକଡ଼ା ପଡ଼ି ନିଆଯାଇଛି—ପୁଣି ସାଧାରଣ ସଭାରେ ବକ୍ତୃତା ଦେଇ ରାଜଦ୍ରୋହୀ ଅପରାଧରେ ଜେଲବନ୍ଦୀ ହୋଇଛି । କିନ୍ତୁ କେବେହେଲେ ମୋ ହାବୁଡ଼ରେ ପଡ଼ି ନାହିଁ । ଏହା ହିଁ ମୋର ସୌଭାଗ୍ୟ । ଆଚ୍ଛା ସୁଧା ! ଆଉ କପେ ଚାହା ଆଣିବୁ କି ?"

କାମରେ ଅବା ବିନା କାମରେ ମୋର ଆଡ଼କୁ ଆକସ୍ମିକ ଆଖି ବୁଲାଇ ସୁଧା ଚାଲିଯାଉଥିଲା । ଏଇଭଳି କିଛି ପିତାଦେଶକୁ ଯେମିତି ତା'ର ଅପେକ୍ଷା ଥିଲା । ମୁଁ କିନ୍ତୁ ଜଣେ ବଡ଼ ଆଶାବାଦୀ-ରୂପେ ଚୂଡ଼ାମଣିବାବୁଙ୍କ ଗପ ଶୁଣିବା ସଙ୍ଗେ ସଙ୍ଗେ ଅନେକ ଦିବା-ସ୍ୱପ୍ନ ଦେଖୁଥାଏ । ସୁଧାର ଲୋମଶ ଆଖିପତା ଯୋଡ଼ିକ ଯେପରି ତା'ର ସମୁଦାୟ ଦେହେର ଭିତରେ ସବୁଠାରୁ ବିଚିତ୍ର; ସବୁଠାରୁ କୋମଳତମ । ମୋର ସର୍ବାଙ୍ଗରେ ସେଇ ଆଖିପତାର ସ୍ପର୍ଶ ଯେମିତି ଅନୁଭବ କଲି ।

"ଆସୁଛୁ ବାପା !" କହି ଘର ଭିତରକୁ ସେ ପଶିଗଲି । କଥାରେ ତା'ର ଗୋଟାଏ ଅସ୍ୱାଭାବିକ ଶୃଙ୍ଖଳା ଆଉ ଉତ୍ସାହ ମୁଁ ଲକ୍ଷ୍ୟ କରେ, ଆଉ ସ୍ୱପ୍ନ ମୋର ସଞ୍ଜୋଇ ନଗରର ନାଳଧାରୀ ଭଳି ସରଳ ହୋଇପଡ଼େ । ଗୃହା-ଟ୍ରେ ଆଣି ସୁଧା ପ୍ରସ୍ତୁତ କରେ ଗୃହା ।

ବାଷ୍ପୀୟ ଗୃହା କପ୍‌ଟି ଉଠାଇ ନଅନ୍ତି ଚୂଡ଼ାମଣି—'ଶୁଣନ୍ତୁ ବାବୁ ! ସନ୍ଧ୍ୟା ପ୍ରାୟ ସାତଟା । ସରକାରୀ ବଙ୍ଗଳା ବାରଣ୍ଡାରେ ବସି ମୁଁ ଖବରକାଗଜ ଓଲଟାଉଥିଲି । ଖଟଖଟ୍ କରି ଗାଡ଼ି ସଶବ୍ଦରେ ମୋ ଦୁଆରେ ଛିଡ଼ା ହେଲା । ସେଥିରୁ ଓହ୍ଲାଇ ଆସିଲେ ସଫେଦ ପାଟ-ସାଳୁଆ ସରୁ ଖଦଡ଼ ପିନ୍ଧା ଜଣେ ଭଦ୍ରଲୋକ । ଆଖିରେ ଚଷମା, ମୁଣ୍ଡରେ ଗାନ୍ଧିଟୋପି । ସମ୍ଭ୍ରମରେ ଓହ୍ଲାଇଗଲି ପିଣ୍ଡା ତଳକୁ ଆଗନ୍ତୁକଙ୍କୁ ଭେଟିବାପାଇଁ । ଦୁଇ ହାତ ଯୋଡ଼ି ସେ ନମସ୍କାର କଲେ । 'କଣ ଚିହ୍ନି ପାରୁଛ ସାହେବ ?' ନା, ଚିହ୍ନିପାରିଲି ନାହିଁ, ଅପ୍ରସ୍ତୁତ ହୋଇ ଗୃହିଁରହିଲି—

"ଏହା ବୋଧହୁଏ ସ୍ୱାଧୀନ ଦେଶର ପୁଲିସଙ୍କ ଲକ୍ଷଣ—ଚିହ୍ନା ଲୋକଙ୍କୁ ଆଗ ଅଚିହ୍ନା ଭାବ ଦେଖାଇବା ।"

'ଏଥର ଚିହ୍ନିଲି । ହାତ ଧରି ପଣ୍ଡା ଉପରକୁ ଆଣିଲି । ଚେହେରାର ଗ୍ରୁଞ୍ଚ, କଥାର ଢଙ୍ଗ ସବୁ ଆଗପରି ଅଛି । ତେବେ ସେ କେତେ ପରିମାଣରେ ମୋଟା ହୋଇଯାଇଛି । ଆଠ ଦଶ ବର୍ଷରୁ ବେଶି ହେଲା ଦେଖାସାକ୍ଷାତ ନାହିଁ । ଦୁଇ ବନ୍ଧୁଙ୍କ ଭିତରେ ଅତୀତର କାହାଣୀ ପେଡ଼ି ଫିଟିଗଲା । ସେ ଆଜି ଦେଶର ଜଣେ ନାମ୍‌ଜାଦା ମାତବର୍ ଲୋକ—ଲଖପତି । ତାହାର ଦେଶପ୍ରେମ ଆଉ ଦାନର ପ୍ରଶଂସା ଚାରିଆଡ଼େ ବିଞ୍ଚୁରିତ । କିନ୍ତୁ ଏ ପର୍ଯ୍ୟନ୍ତ ବିବାହ କରିନାହିଁ ସେ ।"

"ନ କରିବାର ଉଦ୍ଦେଶ୍ୟ ?"

"ବିଭା କରିବା କି ନ କରିବାରେ କ'ଣ କିଛିହେଲେ ଉଦ୍ଦେଶ୍ୟ ଥାଏ ? ତୁ କାହିଁକି ବିଭା ହୋଇଛୁ, କହିଲୁ ଦେଖି ?"

"ମୁଁ ବିଭାକଲି, ଯେଣୁ ତାହା ଖୁବ୍ ସାଧାରଣ । ବିଭା ନ କରିବାଟା ହିଁ ଅସାଧାରଣ କି ନା ?"

"ତା' ହେଲେ ଶୁଣ କହେ । ସ୍ପେଶାଲ୍ ବ୍ରାଞ୍ଚ୍ ପୋଲିସ ହୋଇ ତ ବହୁତ ଅଭିଜ୍ଞତା ଅର୍ଜିଥିବୁ । କି କି କାରଣରୁ ଲୋକ ଅବିବାହିତ ରହିଯାଏ ?"

"ଅଶିକ୍ଷିତ ଗରିବ ଲୋକ ବିଭା ହୋଇ ନ ପାରିବାର କାରଣ ବିଶେଷ କରି ଆର୍ଥିକ ଅନଟନ । ଆଉ ଧନୀଯୁବକର କାରଣ ହେଲା ପ୍ରେମ ।"

"ପ୍ରେମ ?" ମୋହନ ମୋତେ ତରିଟି ଗୃହିଁଲା ।

"ହଁ ପ୍ରେମ—ନାରୀପ୍ରେମ, ଦେଶପ୍ରେମ ଅବା ଈଶ୍ୱର-ପ୍ରେମ । ଶେଷୋକ୍ତ ପ୍ରେମଟା ଅବଶ୍ୟ ଆଦୌ ଆଧୁନିକ ନୁହେଁ, ନିହାତି ପୌରାଣିକ । ମୋତେ ତା ହେଲେ ତୁ କେଉଁ ଶ୍ରେଣୀଭୁକ୍ତ କରୁଚୁ ?"

"ପ୍ରଥମ କମ୍ବା ଦ୍ୱିତୀୟ— ନାରୀପ୍ରେମରେ ହତାଶ ହୋଇ, ନଇଲେ ଦେଶପ୍ରେମରେ ଆଶାବାଦୀ ହୋଇ—ଅର୍ଥାତ୍ ତୋର କଷ୍ଟାର୍ଜିତ ସବୁ ସମ୍ପତ୍ତି ଦେଶ ପାଇଁ ଉତ୍ସର୍ଗକରି ଶେଷରେ ତୁ ଗୋଟିଏ ମାର୍ବଲ ପଥରର ମୂର୍ତ୍ତି ପାଲଟିଯିବୁ । ତା'ପରେ କେଉଁ

ଉଦ୍ୟାନ କୋଣରେ ବା ରାଜପଥ ସଂମ୍ମୁଖରେ ଚଢ଼େଇମାନଙ୍କ ବୈଠକ-ଖାନା ରୂପେ ଚିରକାଳ ଜୀବନ୍ତ ହୋଇ ରହିଥିବୁ । କେମିତି ?”

ତେବେ ଶୁଣ ! ତୋର ପ୍ରଥମ ଅନୁମାନଟା ହିଁ ଠିକ—ନାରୀପ୍ରେମ । କିନ୍ତୁ ନାରୀପ୍ରେମରେ ମୁଁ କଦାପି ହତାଶ ହୋଇ ନାହିଁ—ଚୂଡ଼ାମଣି ! ଦୁନିଆଁ ପ୍ରତି ମୋର କିଛି ହେଲେ ଅବଶୋଷ ନାହିଁ, କାହାର ବିରୁଦ୍ଧରେ ଅଭିଯୋଗ ନାହିଁ ତିଳେମାତ୍ର । ଯାହା ଯେତେବେଳେ ଚାହୁଁଛି, ତାହା ମୋତେ ଆପେ ଆପେ ମିଳିଯାଉଛି । ସେଥିପାଇଁ ସଂସାର ପାଖରେ ମୁଁ କୃତଜ୍ଞ । ମୋର ଅର୍ଥାଭାବ କେବେ ଘଟି ନାହିଁ; ତେଣୁ ନାରୀପ୍ରେମର ଅଭାବ ମଧ୍ୟ ନୁହେଁ । ଜୀବନ-ପଥରେ ମୋର ଏକାଧିକ ନାରୀର ଆବିର୍ଭାବ ଘଟିଛି । ସବୁ ପୁରୁଷଙ୍କର ଯାହା ଘଟିଥାଏ – ତାଙ୍କ ଭିତରୁ କାହାକୁ ମୁଁ ପ୍ରକୃତରେ ଭଲ ପାଇଛି, କହିବା ଅସମ୍ଭବ । ଯିହାକୁ ହୃଦୟ ଦେଇ ଭଲ ପାଇଥିଲି, ତାକୁ ବୋଧହୁଏ···ବୋଧହୁଏ ମୁଁ ତାକୁ ହତ୍ୟା କରିଛି, ଚୂଡ଼ାମଣି !”

ମୋହନର କଥାରେ ମୁଁ ଗୁରୁତ୍ୱ ଦେଉ ନ ଥାଏ । ଆଜିକାଲି ହତ୍ୟାର ନାନାପ୍ରକାର ଅର୍ଥ କରାଗଲାଣି ଶିକ୍ଷିତ ମହଲରେ । ହୁଏତ ମୋହନର ଅବହେଳାରୁ କି ପାରିବାରିକ କାରଣରୁ ତାହାର ପ୍ରଣୟିନୀ ପ୍ରାଣ ହରାଇଥିବ କି ଆତ୍ମହତ୍ୟା କରିଥିବ ।

ସେ ଦୃଢ଼ ଭାବରେ କହିଲା, “ତୁ ବୋଧହୁଏ ବିଶ୍ୱାସ କରି ପାରୁନାହୁଁ, ନ କରିବାର ତ କଥା । ଯେଉଁ ଲୋକ ଦେଶ ଆଉ ଦଶ ପାଇଁ ପ୍ରାଣ ପଣ କରିଥିଲା, ଯାହାର ନିଶ୍ୱାସ-ପ୍ରଶ୍ୱାସରେ ବୋହୁଥିଲା ଅହରହ ଅହିଂସାର ହାଓଆ, ସେହି ସେ ନାରୀହନ୍ତା

ହୋଇପାରେ, ଏହା କ'ଣ କେବେ ବିଶ୍ୱାସ କରିବା କଥା ? କିନ୍ତୁ ସତ୍ୟଟାକୁ ହିଁ ଅନେକ ସମୟରେ ଆମେ ବିଶ୍ୱାସ କରିପାରୁ ନାହିଁ, ନୁହେଁ କି ?"

ମୁଁ ହତବାକ୍ ହୋଇ ଗୃହିଁଲି ।

"ରୂପ, ଗୁଣ, ଶିକ୍ଷାଦୀକ୍ଷା ସବୁ ଦିଗରେ ଝିଅଟି ଥିଲା ଅସାମାନ୍ୟ, ଆଉ ମତେ ସମର୍ପି ଦେଇଥିଲା ତା'ର ସର୍ବସ୍ୱ । ବିଲାତ ଫେରନ୍ତା ବାପା ତା'ର ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ – ତାଙ୍କର ଏକମାତ୍ର ଅଲିଅଳ ଝିଅ ସେ । ଦିଲ୍ଲୀରେ ତା'ର ଜନ୍ମ; ବମ୍ବେ-ମାନ୍ଦ୍ରାଜରେ ମଣିଷ ହୋଇଛି । ବାପାଙ୍କର ଇଚ୍ଛା, ତାଙ୍କରି ସମାନ ଜଣେ ବଡ଼ ଚାକିରିଆ ସାହେବୀଚାଲର ଯୁବକ ହାତରେ ଝିଅଟିକୁ ସମର୍ପିଦେବେ । ପାତ୍ର ମଧ୍ୟ ଠିକ୍ କରି ସାରିଥିଲେ ସେ । ଝିଅର କିନ୍ତୁ ମତ ନ ଥିଲା ସେ ପ୍ରସ୍ତାବରେ । ତା'ର ଅନୁରକ୍ତି କେବଳ ମୋହରି ପାଇଁ, ମୋ ଛଡ଼ା ସେ ଆଉ କାହାକୁ ଦୁନିଆଁରେ ଜାଣେ ନାହିଁ । ମାତ୍ର ପରାଧୀନ ଦେଶରେ ଜଣେ ଖଦଡ଼ଧାରୀ ବ୍ୟବସାୟୀ ମୁଁ । ମୋତେ ଆପଣାର ଏକମାତ୍ର ଉତ୍ତରାଧିକାରିଣୀ କନ୍ୟାକୁ ସମର୍ପିବା ପାଇଁ ଇଂରେଜ ସରକାରଙ୍କର ଜଣେ ପ୍ରଧାନ କର୍ମଚାରୀ ସେତେବେଳେ ଖୁସି ହୁଅନ୍ତେ କାହିଁକି ?"

"ଝିଅଟି ନିଜ ବାପାଙ୍କଠାରେ କେବେ କିଛି ଲୁଚାଇ ନାହିଁ । ଲୁଚାଇବାଟା ଥିଲା ଯେମିତି ତା'ର ସଂସ୍କୃତିବିରୁଦ୍ଧ । ମୋ କତିରେ ବି କେବେ କିଛି ସେ ଲୁଚାଇ ନାହିଁ—ଏତେ ଅଳ୍ପ ଦିନର ପରିଚୟ ଭିତରେ ସୁଦ୍ଧା । ନିଜ ଇଚ୍ଛା ସେ ପ୍ରକାଶ କଲା ବାପାଙ୍କ ଆଗରେ । ବାପା କିନ୍ତୁ ଅଟଳ । ସଂସାର ଛାଡ଼ି ପାରନ୍ତି ସେ, ମାତ୍ର ନିଜ

ଆଭିଜାତ୍ୟକୁ ନୁହେଁ । ଝିଅର ଅଧଃପତନରେ ସେ ଅଗ୍ନିଶର୍ମା ହୋଇଉଠିଲେ । ସେ ମଧ ବାପର ଝିଅ—ତଳେହେଲେ ଆପଣା ସିଦ୍ଧାନ୍ତରୁ ସେ ବିଚ୍ୟୁତ ନାହିଁ ।"

ଆଗ୍ରହ ମୋର ବଢ଼ିବାକୁ ଲଗିଲା । "ଝିଅଟିର ନାଁ କହିବାକୁ କିଛି ଆପତ୍ତି ଅଛି କି ତୋର ?"

"ତୋ ପାଖରେ ଆପତ୍ତି କ'ଣ ? ତୁ ତାକୁ ଜାଣୁ ନିଶ୍ଚୟ— ତୋର ହାତରେ ବୋଧହୁଏ କେଶ୍ ଟା ଅଛି । ବେଶି ଦିନର କଥା ତ ନୁହେଁ । ଝିଅଟିର ନାଁ କା-ମି-ନୀ ।" ଯେତେ ଆସ୍ତେ ସେ କହିଲା, ସେତିକି ବେଗରେ ଚମକି ପଡ଼ି ମୁଁ ଛିଡ଼ା ହୋଇଗଲି— । "କାମିନୀ ! ସେଇ ଯେ ଆତ୍ମହତ୍ୟା କରିଛି ରେଲଲାଇନ୍ ଉପରେ ?"

ସେହି ଝିଅ ସେ; କିନ୍ତୁ ସେ ଆତ୍ମହତ୍ୟା କରି ନାହିଁ, ମୁଁହିଁ ତାକୁ ହତ୍ୟା କରିଛି । ଶୁଣିବୁ ? ତୋର ପୁଲିସ ଗ୍ରନ୍ଥରେ ଯଥେଷ୍ଟ ଦମ୍ଭ ଅଛିଟି କି ? ଗୋଟାଏ ନୂଆ ମିଲର ଲାଇସେନ୍ସ ଆଣିବା ପାଇଁ ମୁଁ ଯାଇଥାଏ କାମିନୀର ବାପାଙ୍କ ପାଖକୁ । ତାଙ୍କର ବଙ୍ଗଳାରେ କାମିନୀ ସଙ୍ଗେ ମୋର ପ୍ରଥମ ସାକ୍ଷାତ । ତା ପରେ ଘରକୁ ତାଙ୍କର କେତେ ଥର ନୂଆ ନୂଆ ଉପଢୌକନ ଧରି ମୁଁ ଯାଇଛି, ଅବଶ୍ୟ କାମିନୀର ବାପା ଅନୁପସ୍ଥିତ ଥିବାବେଳେ । ମୋର ମୂଲ୍ୟବାନ ଉପଢୌକନରେ ତାହାର ମା ଏକାବେଳେ ତରଳି ଯାଇଥିଲେ ସକଳ ସାଧ୍ୱୀନାରୀଙ୍କ ଭଳି । ତାଙ୍କର ଉଦାରତା, ଆତ୍ମୀୟତା ମୋତେ କାମିନୀ ପ୍ରତି ନିକଟରୁ ନିକଟତର କରି ନେଇଥିଲା ।

ବାପା ଯେତେବେଳେ ଜାଣିପାରନ୍ତ, ସେତେବେଳକୁ ଆମେ ବହୁତ ଦୂର ଆଗେଇ ଯାଇଛୁ । କୌଣସି ପ୍ରକାର ବାଧାକୁ ମାନନ୍ତି ନାହିଁ କାମିନୀ । ସକାଳ ନାହିଁ, ସନ୍ଧ୍ୟା ନାହିଁ, ଦ୍ୱିପ୍ରହର ନାହିଁ, ଯେତେବେଳେ ସେତେବେଳେ ଆସି ମୋ ପାଖରେ ହାଜର । ମୁଁ ଘରେ ଥାଏ କି ଅଫିସରେ ଥାଏ, କାର୍ଯ୍ୟବ୍ୟସ୍ତ ଅଛି କି କୌଣସି ଭଦ୍ରବ୍ୟକ୍ତି ସଙ୍ଗେ କଥା ହେଉଛି, ସେଥିପାଇଁ ତା'ର ଭ୍ରୂକ୍ଷେପ ନାହିଁ । ବାପାଙ୍କର ଏତେ ବେଶି ଅବାଧ ହେବାକୁ ମୁଁ ଅବଶ୍ୟ ପସନ୍ଦ କରୁ ନ ଥାଏ । ସମାଜରେ ତାର ବାପାଙ୍କର ଯେଉଁ ପ୍ରତିଷ୍ଠା, ପ୍ରତିପତ୍ତି, ମୋର ମଧ୍ୟ ତାହାଁରୁ କିଛି କମ ବୋଲି ମୁଁ ମନେ କରୁ ନ ଥିଲି । ମୋର କାଠକାରଖାନାର ପ୍ରାୟ ମାଇଲିଏ ଦୂରରେ ଖଣ୍ଡେ ସାନ ପାହାଡ଼ । ତାରି ଉପରେ ଏକୁଟିଆ ଗ୍ରେଷ୍ଟ ବଙ୍ଗଳାଟିଏ ତୋଳିଥାଏଁ । ସେଇଠି ଦୁହେଁ କେତେ ଦିନ, କେତେ ସନ୍ଧ୍ୟା ଯେ କଟାଇ ଦେଇଛୁ, ସେ ସବୁ କହି ପାରିବିନାହିଁ । ପାହାଡ଼ ଉପରେ ଚଢ଼ି ଦେଖାଉଛି ଅସୀମ ଦୁଃସାହସିକତା । ଆଉ ପାହାଡ଼ ତଳର ସରୁ ଝରଣା ପାରରେ ଗହଳିଆ ଗଛ ଗୁଛରେ ବସି କଟାଇଦେଇଛୁ କେତେ ଅଳସ ମଧ୍ୟାହ୍ନ ।

"ତୁ ଅବଶ୍ୟ ସେ ଅବସ୍ଥାକୁ କଳ୍ପନା କରି ପାରିବୁ ନାହିଁ ଚୂଡ଼ାମଣି ! ତୋର ତ ପାଠ ପଢ଼ିକୁ ମିଳିଗଲା ଚାକିରି, ତା ପରେ ବିବାହ ଆଉ ସଂସାର—ବେଶ ଧାରାବାହିକ ଜୀବନ ତୋର । ମୋର କିନ୍ତୁ ପ୍ରତି ମୁହୂର୍ତ୍ତ କାମିନୀକୁ ଘେରି ପୂରି ଉଠିଲା, ତାର ବିଚ୍ଛେଦରେ ଅବା ମିଳନରେ । କାମିନୀକୁ ଛାଡ଼ି ମୁହୂର୍ତ୍ତେ ବଞ୍ଚିବା ମୋ ପକ୍ଷରେ ଯେତେବେଳେ ଅସମ୍ଭବ—ସ୍ୱପ୍ନରେ କିମ୍ବା ଜାଗରଣରେ—ହଁ, ଠିକ୍ ସେତିକବେଳେ ପନ୍ଦର ଷୋହଳଦିନ ତାର ସାକ୍ଷାତ ନାହିଁ ।

କେତେ ଥର ମୁଁ ପାହାଡ଼ ଚଢ଼ିଛି, ଝରଣା କୂଳରେ ଅପେକ୍ଷା କରି ପଡ଼ିଛି, ତା'ର ଖବର ନେବାକୁ ନାନା ଉଦ୍ୟମ କରିଛି ।

କି ଏକ ଅସହ୍ୟ ପ୍ରଦାହରେ ମୋର ମାଂସ ହାଡ଼ ଜଳିବାକୁ ଲାଗିଲା । ଅହିଂସାର ଆଚରଣ କରିବାକୁ ଯାଇ ଯେଉଁ ସ୍ୱାଭାବିକ ଆଦିମ ଅହିଂସାକୁ ବଳାତ୍କାର ଦମନ ପାଇଁ ଅଭ୍ୟାସ କଲି ବର୍ଷ ବର୍ଷ ଧରି, ସେହି ଦମନର ପ୍ରତିକ୍ରିୟା ଯେମିତି ହଠାତ୍ ତେଜିଉଠି ମୋତେ ଦଗ୍ଧ କରିବାକୁ ଲାଗିଲା । କ'ଣ କରିବି, ସ୍ଥିର କରି ପାରିଲି ନାହିଁ । ତେବେ କ'ଣ ଆତ୍ମହତ୍ୟା !

କିଛି ଦିନ ହେବ ମିଲକୁ ଯିବା ଛାଡ଼ିଦେଇଛି । ନିଜ ବଙ୍ଗଳାରୁ ପାହାଡ଼ ଆଉ ଝରଣା ତଟରେ ଖୋଜିବୁଲିଛି ଶାନ୍ତି । ପୁଣି ମଝିରେ ମଝିରେ କାମିନୀର ଘରବାଟେ ଗାଡ଼ି ଚଳାଇ ଜଡ଼ ନିଷ୍ଠୁର ଆବାସ ଉପରେ ଆଖି ବୁଲାଇ ଆଣିଛି । ଦୂରରେ ସୁନୀଳ ପର୍ବତଶ୍ରେଣୀ—ଅଣିର ଧାର ପରି କୁଟିଳ । ପାହାଡ଼ର ପଛପଟେ ସୂର୍ଯ୍ୟର ବିଦାୟ ହାସ୍ୟ ଏକ ତୀବ୍ର ଉପହାସ ଭଳି କୁଟିଳ ହୋଇ ପଡ଼ିଛି । ଆକାଶ ଆଉ ପୃଥିବୀକୁ, ଉଚ୍ଚ ଆଉ ନୀଚକୁ, ପୁଣି ଅସୀମ ଆଉ ସସୀମକୁ ମିଳାଇ ଦେଇଛି ସତେ ଯେମିତି ଏକ ସ୍ପନ୍ଦନ ।

ଘର ଛାଡ଼ି ବାହାରିଲି । ଚାରିଆଡ଼ର ଏଇ ନିସ୍ପନ୍ଦତାର ସ୍ପନ୍ଦନ ମୋତେ ଅସ୍ଥିର କରି ପକାଇଲା । ଇଚ୍ଛାହେଲା, ମୋର କଳକାରଖାନା, ଗାଡ଼ି-ମଟର ସବୁଯାକ ମୁହୂର୍ତ୍ତକେ ଜାଳି ପାଉଁଶ କରି ଦେବାକୁ, ସବୁ ଯେମିତି ଅସ୍ୱାଭାବିକ ଅଶ୍ୱସ୍ତିରେ ପୂରି ରହିଛି । ତୁ ତ ପୁଲିସ ମଣିଷ, ସବୁବେଳେ ଦଙ୍ଗାହଙ୍ଗାମ ଭିତରେ ଚଳିଆସିଲୁ । ନିଜ ଜୀବନକୁ ପ୍ରତି ମୁହୂର୍ତ୍ତରେ ଅନୁଭବ କଲୁ । ତୁ କାହୁଁ ଜାଣିବୁ ମୋର ଅବସ୍ଥା ? ତୋ'ପରି କାହାରିକି ଆପେ ନ

ମାରିଲେ ମଧ୍ୟ ମୁଁ ନିଜେ ମାଡ଼ ଖାଇଛି । କାହାରିକି ଜେଲ ଭିତରକୁ ନ ପୂରାଇଲେ ବି ନିଜେ ପଶିଛି ; କଟେଣ୍ଟ କାଠଗଡ଼ାରେ ଠିଆହୋଇ ଜମାନବନ୍ଦି କରିଛି । ଡମ ପୁଲିସଙ୍କର କେତେ ଝିଙ୍କା-ଓଟରା, ଲାଠି-ମୁନ ଆଗରେ ଛିଡ଼ା ହୋଇଛି ବୀରଦର୍ପରେ । ସେତେବେଳେ ହିଂସାର ଅନୁଭୂତିଟା ହିଁ ଥିଲା ଅହିଂସା । ଅହିଂସାକୁ ଆମେ ଧରି ନେଇଥିଲୁଁ ଏକ ପ୍ରକାର ଲଢ଼େଇ—ହିଂସାକୁ ସହ୍ୟ କରିବାର ଅଦମ୍ୟ ଉତ୍ତେଜନାରେ ପୂରି ଉଠିଥିଲା ସମଗ୍ର ଦେହ, ମନ ଆଉ ପ୍ରାଣ ।

ସ୍ୱାଧୀନତା ଲଢ଼େଇ ପରେ ସବୁ ଉତ୍ତେଜନା କମିଆସିଲା । ଅହିଂସା ହୋଇପଡ଼ିଲା ଏକ ନିଷ୍ପ୍ରାଣ, ନିସ୍ତେଜ ନାସ୍ତିକତା । ଧୈର୍ଯ୍ୟ, ଅହିଂସା, ସଂଯମର ଅଭ୍ୟାସ ମୋର ଦୁର୍ବଳ ହୋଇ ଉଠିଥାଏ । କାମିନୀର ଅନୁପସ୍ଥିତି ମୋ ଅବସ୍ଥାକୁ ଆହୁରି ଦୁର୍ବଳ କରି ପକା-ଇଲା । ଦେଶରେ ଅହିଂସା ଲଢ଼େଇ ଯେତେବେଳେ ଧିମେଇ ଆସେ ଆଉ ଏକ ଉତ୍ତେଜନା ପାଇବା ପାଇଁ ମୁଁ ଚାଲିଆସିଥିଲି ଓଡ଼ିଶାର ଜଙ୍ଗଲ-ପାହାଡ଼ର ଭଦ୍ରମଣିଷଙ୍କ ଆଖି ନ ପଡ଼ିବା ଅଂଶଟାକୁ । ହଁ, ଚୂଡ଼ାମଣି ! ତୁ ତ ଓଡ଼ିଶାର କେତେ ଜିଲ୍ଲା ବୁଲିଥିବୁ ନିଶ୍ଚୟ ! କିନ୍ତୁ ମଣିଷ ଛଡ଼ା ଆଉ ସବୁ ପ୍ରକାର ଜୀବଜନ୍ତୁ, ପଶୁପକ୍ଷୀ, କୀଟ-ପତଙ୍ଗ, ଗଛଲତାଭରା ଏଇ ଅଞ୍ଚଳଟାକୁ ଟିକିଏ ନିକଟରେ ଆସି ଅନୁଭବ କରୁଛୁ କି ? ମୋର ତ ମନେହୁଏ, ପ୍ରକୃତରେ ଆମ ରାଜ୍ୟର ଅସଲ ହୃତ୍‌ପିଣ୍ଡ ଏଇ ଅଞ୍ଚଳରେ ହିଁ ଦୁକୁ ଦୁକୁ ହେଉଛି ।

ସ୍ୱାଧୀନତା ଲଢ଼େଇ ଶିଥିଳ ହୋଇଯିବାରୁ ମୁଁ ଯେଉଁ ନିର୍ବେଦ ନିଷ୍ଫଳତା ଅନୁଭବ କରୁଥିଲି, ଓଡ଼ିଶାର ଏଇ ଅନ୍ଧାର

ମୁଲକରେ ମିଳିଲା ତାହାର ପ୍ରତିକାର । ପୁଲିସର ବେତାଘାତ, ଜେଲଫାଟକ ଭିତରେ ନିଜକୁ ଅନୁଭବ କରିବାର ସବୁ ସ୍ପନ୍ଦନ ଉତ୍ତେଜନା ଯୋଗାଇଦେଲା ଯେମିତି ମୟୂରର ନୃତ୍ୟ, ସଞ୍ଜ ସକାଳେ 'ଚଷାପୁଅରେ' ଡାକ ଆଉ ନିଶାଅଧରେ ବାଘ, ହାତୀ, ଭାଲୁଙ୍କ ହିଂସ୍ରଗର୍ଜନ ।

ସବୁଠାରୁ ମୋର ଆକର୍ଷଣର ବସ୍ତୁ ଥିଲା, ଓଡ଼ିଶାର ଅରଣ୍ୟସଙ୍କୁଳ ପର୍ବତଶ୍ରେଣୀର ଘାଟି । ସତ କହୁଛି ଚୂଡ଼ାମଣି ! ଏହି ସବୁ ଘାଟି ବଦଳରେ ମୁଁ ଆମର ଦୁଃଖାର୍ଜିତ ସ୍ୱାଧୀନତାକୁ ସୁଦ୍ଧା ଦାନ କରିପାରେଁ । ଓଡ଼ିଶାର ଆଉ କିଛି ନ ଥିଲେ ବି ଏହି ଘାଟିଗୁଡ଼ିକ ତା'ର ଶ୍ରେଷ୍ଠ ସମ୍ପଦ । ତୁ ମୋର ଦେଶପ୍ରୀତିକୁ ବନ୍ଧୁ ହିସାବରେ ଯେତେ ପରିହାସ କର ପଛକେ, ମୁଁ ଓଡ଼ିଶାକୁ ସବୁଠାରୁ ବେଶି ଭଲପାଏ, ତାହାର ଏହି ପର୍ବତ-ଘାଟିଗୁଡ଼ିକ ଯୋଗୁଁ । ମୟୂରଭଞ୍ଜ, ଆଠମଲ୍ଲିକ, ସାତକୋଶିଆ, କୋରାପୁଟ, କଳାହାଣ୍ଡି —ଓଃ ! ଉତ୍କଳମାତାଙ୍କର ଗୋଟିଏ ସୀମାରୁ ଅନ୍ୟ ସୀମା ପର୍ଯ୍ୟନ୍ତ କେତେ ସ୍ପନ୍ଦନ, କେତେ ଉତ୍ତେଜନା ପୂରିରହିଛି ଚୂଡ଼ାମଣି !

କେତେ ଥର ଏହିସବୁ ଘାଟି ଉପରେ ଗାଡ଼ି ଚଳାଇ ସେ ସ୍ପନ୍ଦନ ମୁଁ ଅନୁଭବ କରିଛି । ମୋର ଅହିଂସା ଲଢ଼େଇର ଅଭାବ ପୂରଣ ହୋଇଛି ତାହାର ଦ୍ୱାରା । ଶେଷରେ ମୋର ଜୀବନର ସବୁ ସ୍ପନ୍ଦନ, ଉତ୍ତେଜନା ଠୁଳ ହୋଇଥିଲା କାମିନୀ ପାଖରେ । କିନ୍ତୁ ଧୈର୍ଯ୍ୟ, ପ୍ରତୀକ୍ଷା— ସେ ସବୁର ତ ପୁଣି ସୀମା ଅଛି ! କାମିନୀ ତାହାର ନ ଆସିବା କାରଣ ଅନ୍ତତଃ ମୋତେ ଜଣାଇଦେବା ଉଚିତ ନ ଥିଲା କି ?

ବନପ୍ରକୃତିକୁ ଆଚ୍ଛନ୍ନ କରି ଓହ୍ଲାଇ ଆସିଲା ସନ୍ଧ୍ୟା । ସେଇ ମୁହୂର୍ତ୍ତରେ ମୋ ଆଗରେ ଆସି ଛିଡ଼ାହେଲା କାମିନୀ । —"ମୋ ଉପରେ ଆପଣ ଖୁବ୍ ରାଗି ଯାଇଚନ୍ତି ନା ? ମୁଁ ଆଜି କିନ୍ତୁ ବିଦାୟ ନେବାକୁ ଆସିଚି । ହଁ ହଁ, ବିଦାୟ—ଚିରଦିନ ଲାଗି ।" ସ୍ୱଭାବ-ସୁଲଭ ନିରାଡମ୍ବର ଭାଷାରେ କୌଣସି ଉପକ୍ରମଣିକା ନ ଦେଇ ସେ ପ୍ରକାଶ କଲା—"ଚିରଦିନ ଲାଗି ।"

"ହଁ, ଚିରଦିନ ଲାଗି ! ବାପା ଅତି ଭୀଷଣ ଭାବରେ ଅସୁସ୍ଥ । ସେଥିପାଇଁ ମୁଁ ଏତେ ଦିନ ଆସିପାରି ନାହିଁ । ଆପଣଙ୍କ ପାଖରେ ମୋ'ର ପ୍ରତିଶ୍ରୁତି ରଖିପାରି ନାହିଁ । କ୍ଷମା କରିବେ ମୋତେ ।"

''କିନ୍ତୁ କାମିନୀ ! ମୋ ପ୍ରସ୍ତାବର କ'ଣ ଏହା ହିଁ ନିଷ୍ପତ୍ତି ?" ନିଜର ସ୍ୱରଟାକୁ ଶୁଣି ମୁଁ ନିଜେ ମଧ୍ୟ ତ୍ରସ୍ତ ହୋଇ ପଡ଼ୁଥାଏ ।

"ଆପଣଙ୍କ ପ୍ରସ୍ତାବ—ସମସ୍ତଙ୍କୁ ଲୁଚି ପଳାଇଯିବା ନୁହେଁ କି ? କିନ୍ତୁ ତାହା କଦାପି ମୋ ଦେଇ ହେବ ନାହିଁ ପିଣ୍ଡରେ ପ୍ରାଣ-ଥିବାଯାକେ । ଲୁଚିବାଟା ଅନ୍ୟାୟ, ପାପ । ଜୀବନ ଦେବି ପଛେ···"

ଆଉ କିଛି କହିବାକୁ ଦେଲି ନାହିଁ ତାକୁ । ଆଉ କିଛି ବ୍ୟାଖ୍ୟା ଶୁଣିବାକୁ ଧୈର୍ଯ୍ୟ ମୋର ଲୋପ ପାଇଲା । ହଠାତ୍ ତାହାକୁ ଭୂମି ଉପରକୁ ଟାଣିଆଣିଲି—ଆଉ ସଙ୍ଗେ ସଙ୍ଗେ ଚିପି ଧରିଲି ତାର ଗଳାକୁ । ତା'ର ହାତ ପାଦ ମୋରି କୋଳରେ କିଛି କ୍ଷଣ ଛଟିପିଟି ହୋଇ ତା'ପରେ ସ୍ଥିରଭାବରେ ପଡ଼ିରହିଲା । ଏହା ସହିତ ତୁ ଅତି ସହଜରେ ରେଲଦୁର୍ଘଟଣାକୁ ଯୋଡ଼ି ଦେଇ-ପାରୁ । ମୋର ବର୍ଣ୍ଣନା କରିବା ଅନାବଶ୍ୟକ । କାମିନୀର ଶବକୁ

ତରଳ ଆସିବା ପର୍ଯ୍ୟନ୍ତ କୋଳରେ ଧରି ବାରମ୍ବାର ମୁଁ ଚୁମ୍ବନ କରିଛି । ବିଶ୍ୱାସ କରିପାରିଲି ନାହିଁ, ମୁଁ ହିଁ ତାକୁ ହତ୍ୟା କରିଛି !

ତୋର ପୁଲିସ ଗୃହର ଭିତରେ ଏଭଳି ହତ୍ୟାକାହାଣୀ ଭଳି ଶୁଣିଛୁ କେବେ ? ରାଗ ନାହିଁ, ହିଂସା ନାହିଁ, କୌଣସି ଲାଭର ପ୍ରତ୍ୟାଶା ନାହିଁ,......ଶୁଣୁଚୁ, ଚୂଡ଼ାମଣି ! କାହାର ଉପରେ ପ୍ରତିଶୋଧ ନାହିଁ, ଅଭିଯୋଗ ନାହିଁ ।

ଚମକି ପଡ଼ିଲି ମୁଁ, ଯେତେବେଳେ ସେ ମୋତେ ଧରି ଦୋହଲାଇ ଦେଲା । "ତୋ ପାଖରେ ମୋର ଗୋଟାଏ ମାଗୁଣି ଅଛି ଭାଇ ! ସେଇଥିପାଇଁ ଏତେ ବାଟ ଧାଇଁ ଆସିଛି ।"

କିନ୍ତୁ ତାକୁ ଜବାବ ଦେଇପାରିଲି ନାହିଁ । କେବଳ ନିର୍ବୋଧ ଭଳି ଚାହିଁରହିଲି ।

"ମୋର ଅନୁରୋଧ—କାମିନୀ ଆତ୍ମହତ୍ୟା କରିଛି ବୋଲି ତୁ ଯେମିତି ରିପୋର୍ଟ ନ ଦେଉ । ତା'ନାମରେ ଏତେ ବଡ଼ ଦୁର୍ନାମ ମୁଁ ସହ୍ୟ କରିପାରିବି ନାହିଁ । ଚୂଡ଼ାମଣି ! ତା ଭଳି ଏତେ ସ୍ୱଚ୍ଛ, ଏତେ ସରଳ ଝିଅକୁ କୌଣସି କଳଙ୍କରେ ଜଡ଼ିତ କରିବା—ନା, ନା, ଚୂଡ଼ାମଣି ! ସେ ନିଶ୍ଚୟ ମତେ କ୍ଷମା କରିଛି । ସେଦିନ ମତେ କ୍ଷମା ମାଗିବାକୁ ଆସିଥିଲା ସେ; କିନ୍ତୁ ଓଲଟି ମୁଁ ହିଁ ନିଜକୁ ତା ପାଖରେ କ୍ଷମାଭିକ୍ଷୁ ଥାନରେ ଆଣି ଥୋଇଲି । ସେତିକି ନୁହେଁ । ତୋ ଭଳି ଜଣେ ନିମକହଲା ପୁଲିସ କର୍ମଚାରୀକୁ ମଧ୍ୟ ଏଥିରେ ଲିପ୍ତ କରିବି ମୁଁ—ଅର୍ଥାତ୍ ତୁ ସବୁ ଜାଣି ସୁଦ୍ଧା ମୋତେ ଗିରଫ କରି ପାରିବୁ ନାହିଁ କି କାମିନୀ ଆତ୍ମହତ୍ୟା ନ କରିଛି ବୋଲି ରିପୋର୍ଟ ଦେଇ ପାରିବୁ ନାହିଁ । କାମିନୀ କଥା ମୋର ମନେ ପଡ଼ୁଛି—

ଗୋଟାଏ ଘଟଣା ଲୁଗୃଇବାକୁ ଗଲେ ତେଣିକ ସବୁ କେମିତି ଜଟିଳ ହୋଇପଡ଼େ; ଆଉ କେତେ ଲୋକଙ୍କୁ ସେଥିପାଇଁ ଦାୟୀ କରିବାକୁ ହୁଏ । ପାପ-ପୁଣ୍ୟରେ ମୋର କେବେହେଲେ ବିଶ୍ୱାସ ନ ଥିଲା କି ଆଜି ମଧ୍ୟ ନାହିଁ । କାମିନୀ ଜୀବିତ ଅବସ୍ଥାରେ ଥାଇ ମୋ ସହିତ ଭେଟ ହେବ ନାହିଁ, ଏଭଳି ପରିସ୍ଥିତି ମୋର କଳ୍ପନାର ବାହାରେ । ସେଇ ଅସମ୍ଭବ ଅବସ୍ଥାକୁ ହିଁ ଏଡ଼ିବା ପାଇଁ ମୁଁ ତାକୁ ହତ୍ୟାକରିଛି; ଆଉ କିଛି ନୁହେଁ । ଏହାଛଡ଼ା ଆଉ କିଛି ନୁହେଁ । ଏହା ଛଡ଼ା ଆଉ କିଛି ଉପାୟ ନ ଥିଲା ମୋର । ଜୀବନରେ କାମିନୀ ଛଡ଼ା ଦ୍ୱିତୀୟ ପ୍ରେୟସୀ ଯେ ମୋର ନାହିଁ ।

ସେ ମୋ ପାଖରୁ ଚିରଦିନ ପାଇଁ ବିଦାୟ ନେବାକୁ ଆସିଥିଲା । ମୁଁ କଣ ତାକୁ ବିଦାୟ ଦେଇ ନାହିଁ ? ତା'ର ଅନୁରୋଧ ରକ୍ଷା କରି ନାହିଁ ? କହିଲୁ ଚୂଡ଼ାମଣି ! କିନ୍ତୁ ମୋର ତ୍ରୁଟି ରହିଗଲା କେଉଁଠି ଜାଣୁ ? କାମିନୀକୁ ବିଦାୟ ଦେଲା ପରେ ଘଟଣା ଏତେଦୂର ଜଟିଳ ହେବ ବୋଲି ମୁଁ ଆଶଙ୍କା କରି ନ ଥିଲି । ତା ଭିତରକୁ ତୁ ମଧ୍ୟ ଓଟାରି ହୋଇ ଆସିବୁ ବୋଲି ବିଶ୍ୱାସ ନ ଥିଲି ।

ମୋ ପାଖରୁ ସେଇ ରାତିରେ ସେ ବାହାରିଗଲା । ଦୁଇ ଦିନ ପରେ ଖବରକାଗଜରେ ପଢ଼ିଲି—ଶ୍ରୀ ଅମୁକ—ଏକୁଟିଆ ଜିପ୍ ଚଳାଇ ଆସୁଥିବାବେଳେ ରାତି ଅଧରେ ଜିପ୍‌ଟି ସାତ-କୋଶିଆ ଗଣ୍ଡ ମଝିକୁ ଗଡ଼ିଯିବା ଫଳରେ ପ୍ରାଣ ହରାଇଛନ୍ତି । ତା'ପରେ ତାଙ୍କର ଦାନଶୀଳତା, ଉପାର୍ଜନକ୍ଷମତା, ଦେଶପ୍ରେମ ଇତ୍ୟାଦି ଇତ୍ୟାଦି ।

— ✻ —

## ପାଷାଣ-ପ୍ରତିମା

**ଶ୍ରୀ ବୈକୁଣ୍ଠନାଥ ଦାସ, ବ. ଏ.**

ଚୌର୍ଯ୍ୟ ଅପରାଧରେ ବର୍ଷକ ପାଇଁ ତାର ସଶ୍ରମ କାରାଦଣ୍ଡ ହେଲା । ଅପରାଧସଂକ୍ରାନ୍ତ ଘଟଣା ନେଇ, ଲୋକଟାର ମାର୍ଜିତ ବ୍ୟବହାର ଦେଖି ତା ପ୍ରତି ମୋର ଯେଉଁ ଭାବ ଜନ୍ମିଥିଲା, ତା ଫଳରେ ଜେଲକର୍ତ୍ତୃପକ୍ଷଙ୍କ ଅନୁମତିକ୍ରମେ ମୁଁ ତା ସହିତ କଥାବାର୍ତ୍ତା କରିବାର ସୁଯୋଗ ପାଇଲି ।

ସେ କହିଲା, "ତୁମେ ମିଛ କରିପାରୁ ବନ୍ଧୁ ! ମୋର ଦିନେ ଭଲ ଅବସ୍ଥା ଥିଲା । ଆଜି ଯେଉଁପରି ମତେ ଦୀନ-କାଙ୍ଗାଳ ଭାବରେ ଦେଖୁଛ, ମୁଁ ସେପରି ନ ଥିଲି । ମୁଁ ଆଜି ଚୋର, ଉପେକ୍ଷିତ, ସମାଜର ପରିତ୍ୟକ୍ତ ନଗଣ୍ୟ ଜୀବ; କିନ୍ତୁ ମୋର ଜୀବନର ଉଷାକାଳରେ ମୋତେ ଯେ ଥରେ ଦେଖିଛି, ସେ ଆଜି ମୋତେ ଏପରି ଭାବରେ ଦେଖି ନିଶ୍ଚୟ ନିଜ ଚକ୍ଷୁ ଓ ସ୍ମୃତିଶକ୍ତି ଉପରେ ବିଶ୍ୱାସ ହରାଇ ବସିବ ।"

ତା'ର ଆଖି ଛଳ ଛଳ ହୋଇ ଆସିଲା । ନିଜକୁ ସମ୍ଭାଳି ନେଇ କହିଲା, "ମୁଁ ଯଦ୍ୟପି ଧନୀପୁତ୍ର ନ ଥିଲି ସତ, କିନ୍ତୁ ନିଜ ବୁଦ୍ଧିବଳରେ ନିଜକୁ ପ୍ରତିପୋଷଣ କରିବାର କାମତି ମୋର

ଥିଲି । ମୁଁ ପିଲାଦିନେ ସାମାନ୍ୟ ପଢ଼ାଶୁଣା କରିଥିଲି । ଫଳରେ ପଢ଼ାପଢ଼ି କରିବା ମୋର ଭାଗ୍ୟରେ ଘଟିଲି ନାହିଁ । ବାପାଙ୍କର ଆକସ୍ମିକ ମୃତ୍ୟୁ ମୋର ଜୀବନର ଉନ୍ନତି ପଥର ପ୍ରତିକୂଳ ହେଲା । ମାଆ ତ ଆଗରୁ ଯାଇଥିଲେ । ମୁଁ ହେଲି ମୋ ଜୀବନର ଏକମାତ୍ର କର୍ଣ୍ଣଧାର । ସଂସାର-ସମୁଦ୍ରର ପ୍ରତିକୂଳ ବାତ୍ୟାର ସମ୍ମୁଖୀନ ହେଲି ସେହିଦିନଠାରୁ ।"

"କିନ୍ତୁ ମୋର ନିଜ ଶକ୍ତି ଉପରେ ଅଟଳ ବିଶ୍ୱାସ ଥାଏ । ପିଲାଦିନୁ ମୋର ନାନାପ୍ରକାର କୁଟୀରଶିଳ୍ପ ପ୍ରତି ଆସ୍ଥା ଥିଲି । ମୁଁ ସୁନ୍ଦର ଚିତ୍ରାଙ୍କନ କରି ପାରୁଥିଲି, ପିଲାଙ୍କ ସକାଶେ ଖେଳନା ଗଢ଼ି ପାରୁଥିଲି; ନାନାରକମ ଘଡ଼ି, ମଟର ଇଞ୍ଜିନ, କୋଲପ ପ୍ରଭୃତି ମରାମତି କରିବାରେ ମୋର ଦକ୍ଷତା ଥିଲି । ମୁଁ ବେଶି ଗୃହ ପଇସା ରୋଜଗାର୍ କରିପାରିଲି । ମୋ ଉପରେ ନିର୍ଭର କରି କେହି ନ ଥିଲେ; କାରଣ ମୋର ସେତେବେଳେ ବିବାହ ହୋଇ ନ ଥିଲି । ସୁତରାଂ ସ୍ୱଚ୍ଛନ୍ଦଭାବେ ମୋର ଦିନମାନ ଗଡ଼ି-ଯାଏ । ମୋର ଜୀବନ ଏହିପରି ଆନନ୍ଦରେ କଟିଯାଉଥାନ୍ତା, ମାତ୍ର ଭାଗ୍ୟାକାଶରେ ମୋର ଉଦୟ ହେଲି ଗୋଟାଏ ଧୂମକେତୁ—ନା, ନା, ମୋର ସେ ଧ୍ରୁବତାରା—ଯା ଯୋଗୁଁ ମୋର ଜୀବନର ଏ ପରିଣତି, ଏ ଅନ୍ଧକାର କାରାବାସ ।"

ମୁଁ ଅବାକ୍ ହୋଇ ଲୋକଟା ପ୍ରତି ଚାହିଁରହିଲି ।

ସେ ପୁଣି ଆରମ୍ଭ କଲା, "ମୁଁ ଜାନକୀ ପ୍ରତି ଲୋଲୁପ ଦୃଷ୍ଟି ଦେଲି ସେଦିନ, ଯେଉଁଦିନ ମୋର ସମବ୍ୟବସାୟୀ ବନ୍ଧୁ ମୋତେ ଚା' ପାନ ପାଇଁ ନିଜ ଘରକୁ ନିମନ୍ତ୍ରଣ କରିଥିଲେ । ସେ ଜଣେ ସରଳବିଶ୍ୱାସୀ ଅମାୟିକ ଭଦ୍ରଲୋକ । ଜାନକୀ ଆମ ଦୁହିଁଙ୍କୁ ଚା'

ପରିବେଷଣ କଲି । ତା'ର ଲଳିତ ମାଧୁରୀ ଦେଖି, ତାର ରୂପ ଓ ଗୁଣରେ ମୁଁ ସେହିକ୍ଷଣି ତା ପ୍ରତି ଆକୃଷ୍ଟ ହେଲି । (ଚା'ପାନବେଳେ ଭଦ୍ରତାର ସମସ୍ତ ସୀମା ଲଙ୍ଘନ କରି ତା' ଚକ୍ଷୁ ସହିତ ଚକ୍ଷୁ ମିଳାଇ ଚୋରିଚକ୍ଷୁ କରୁଥାଏ ।)

"ପରଦିନଠାରୁ ମୁଁ ଜାନକୀ ଘରକୁ ଅବାଧ ଗତାଗତ କଲି । ବନ୍ଧୁ ମୋର ଆନନ୍ଦରେ ମତେ ଅଭ୍ୟର୍ଥନା କରୁଥାନ୍ତି । (ମତେ ଏକୁଟିଆ ଘରେ ରଖିଦେଇ ବାହାରକୁ ଚାଲିଯାଆନ୍ତି ।) ଜାନକୀ ସହିତ ମୋର ବନ୍ଧୁତା ଜମି ଉଠିଲା । ମୋର ବନ୍ଧୁଙ୍କର ମୁଁ ଅନ୍ତରଙ୍ଗ ହୋଇ ପଡ଼ିଲି । ମୁଁ ମୋର ପୂର୍ବ ବସା ଛାଡ଼ିଦେଇ ଜାନକୀର ପଡ଼ୋଶୀ ହେଲି । ଆମମାନଙ୍କ ଭିତରେ ଯେପରି ପାଣି ଗଳିଲା ନାହିଁ ।

ମୁଁ ଜାନକୀ ସହିତ ନାଟକ ଦେଖିଯାଏ । ବନ୍ଧୁ ମୋର ଆମ ସଙ୍ଗେ କଦାଚିତ୍ ଆସୁଥିଲେ । ମୋର ବିଶ୍ୱାସ ଯେ, ଜୀବନର ଚରମ ସୁଖ ସେତେବେଳେ ମୁଁ ଅନୁଭବ କରୁଥିଲି, ଯାହା ଜୀବନରେ ଆଉ କେବେ କରି ନ ଥିଲି, କରିବ ନାହିଁ ।

"ଦିନେ ଗୋଟାଏ ଟେଲିଗ୍ରାମ ଆସି ପହଞ୍ଚିଲା । ଜାନକୀକୁ ଧରି ବନ୍ଧୁ ମୋର କେତେ ଦିନ ପକାଶେ କଟକ ଛାଡ଼ି କଲିକତା ଚାଲିଗଲେ । ମୁଁ ସେମାନଙ୍କୁ ନେଇ ଷ୍ଟେସନରେ ଗାଡ଼ି ଚଢ଼ାଇ ଫେରିଲି, ମା ଜାନକୀର ବିରହ ମୋତେ ବିଶେଷ ବାଧିଲା । ପ୍ରତିଦିନ ତା'ଠାରୁ ପତ୍ର ପାଇବା ଆଶାରେ ପୋଷ୍ଟଅଫିସକୁ ଯାଏ, ମାତ୍ର କୌଣସି ଦିନ ପତ୍ରଟିଏ ସୁଦ୍ଧା ପାଇଲି ନାହିଁ । ଜାନକୀ ଯେ କଥା ଦେଇ ଯାଇଥିଲା, ତାହା ମଧ୍ୟ ରକ୍ଷା କଲା ନାହିଁ । ଦେଖୁ ଦେଖୁ

ମାସେ, ଦୁଇ ମାସ, ଛ' ମାସ ବିତିଗଲା । ତା କଥା ଭାବି ଭାବି ଦିନେ ବସାରେ ଅନ୍ୟମନସ୍କ ହୋଇ ବସିଛି, ଗୋଟାଏ ତାର ପାଇଲି— ଜାନକୀ ଟାଇଫଏଡ଼୍ ଜ୍ୱରରେ ମୃତ ।

ଜାନକୀ ତ ମଲା; ଜାନକୀର ସ୍ମୃତି ମୋ ଜୀବନକୁ ଦୁର୍ବଳ କରି ଦେଲା, ତାର ସ୍ମୃତି ମୋ ମନରେ ଦାଗ ହୋଇ ରହିଲା । ସେ ଦାଗ କି ସହଜରେ ଲିଭେ ? ତା କଥା ଭାବିଲେ ମୋ ହୃଦୟରେ କୋହ ଉଠେ, ରକ୍ତ ପାଣି ହୋଇଯାଏ । ତେବେ କରେ କଣ ? କିପରି ବା ତା କଥା ଭୁଲିପାରିବି ? ତା ସ୍ମୃତି ମୋତେ ସର୍ପିଣୀ ବାଳୁଲତା ଆଡ଼କୁ ଟାଣିନେଲା । ବହୁତ ଚେଷ୍ଟାକଲି, ଜାନକୀ ସ୍ମୃତି ପୋଛିବାକୁ । ତାର ନାମ ଗନ୍ଧ ମନରୁ ନିଷ୍କାସନ କରିବାକୁ ଲାଗିଲି । ତା କଥା ଏକାବେଳକେ ମୂଳପୋଛ କରିବାକୁ ବାହାରିଲି । ମୁଁ ସମୟ ସମୟରେ ସାମାନ୍ୟ ମଦ୍ୟପାନ କରେ । ଏଥର ତାର ମାତ୍ରା ଯଥେଷ୍ଟ ବଢ଼ାଇଦେଲି ।

"କିନ୍ତୁ ଏ ବିସ୍ମୃତିର ପ୍ରତିକ୍ରିୟାରୂପେ ଗୋଟିଏ ବିକଟ ପିଶାଚ ମୋ ଦେହରେ ଜାଗ୍ରତ ରହିଲା । ମୁଁ ମତୁଆଳ ହୋଇ ପଡ଼ିଲି । ହିତାହିତ ଜ୍ଞାନ ମୋର ରହିଲା ନାହିଁ । 'ନିଶା'ର ପାରଣା ମୋର ଅନ୍ୟାନ୍ୟ ଖାଦ୍ୟ ପ୍ରତି ବିତୃଷ୍ଣା ଜନ୍ମାଇଦେଲା । ମୁଁ ହେଲି ମଦୁଆ, ମୁଁ ହେଲି ମତୁଆଳ ।

"ମୋତେ ଭଦ୍ରଗୋଷ୍ଠୀରେ ଆଉ କେହି ଦେଖନ୍ତି ନାହିଁ । ମୁଁ ଦେଖାଦିଏ ମଦ୍ୟପମାନଙ୍କ ସମାଜରେ, ଚୋର ତସ୍କରମାନଙ୍କ ସଙ୍ଗରେ । ମୋର ଏ ପତନ ଜାନକୀ ଯୋଗୁଁ ତାକୁ ପାଶୋରିବାର ଚେଷ୍ଟାର ଫଳ । ପରିଶେଷରେ ତାକୁ ମୁଁ ଏକାବେଳକେ ଭୁଲିଗଲି ।"

"ଏହିପରି କେତେଦିନ ଗଲା । ଦିନେ ମୁଁ ମଜୁଆଳ ହୋଇ ବୁଲିଥାଏ ଗୋଟିଏ ରାସ୍ତା ଉପରେ । ଯାଉ ଯାଉ ନିଲ୍ଲକ୍ଷ୍ୟ ଭାବରେ ଗୋଟିଏ ଭଦ୍ରଲୋକଙ୍କ ବଗିଚା ଭିତରେ ପଶିଗଲି । ସେତେବେଳେ ଭଦ୍ରଲୋକଙ୍କ ଘରେ କୌଣସି ବିଷୟରେ ବିଶୃଙ୍ଖଳା ଘଟିଥାଏ । ମତେ ଦେଖି ଜଣେ ଚାକର କହିଲା, "ଏଇ ତ ଜଣେ କୋଲପ ମରାମତି କରିବାବାଲା ।" ମୋତେ ସେମାନେ ଆଗ୍ରହର ସହିତ ଭିତରକୁ ନେଇଗଲେ । ଗୋଟିଏ କୋଲପ ଚାବି ହଜି ଯାଇଥିବାରୁ ସେମାନେ ଭିତରର ଗୋଟିଏ କୋଠରୀ ଖୋଲି ପାରୁ ନ ଥିଲେ । ମୁଁ ଯାଇ ସାମାନ୍ୟ ଉପାୟ ଦ୍ୱାରା କୋଲପ ଫିଟାଇ ଦେଇ ବଖରାଟି ଉନ୍ମୁକ୍ତ କରିଦେଲି ।

"କିନ୍ତୁ ଫେରିବାବେଳେ ଏ କ'ଣ ଦେଖିଲି ? କୋଠରୀ ଭିତରେ ଏ କଣ ? ଟେବୁଲ ଉପରେ ଏ କାହାର ମୂର୍ତ୍ତି ? ସେହି ରୂପ, ସେହି ଯୌବନ, ସେହି ସୁଗଠିତ ନାସା, ସେହି ବର୍ତ୍ତୁଳ ଚିବୁକ । ଜାନକୀର ସମସ୍ତ ସାଦୃଶ୍ୟ ଏକାଧାରରେ ଦେଇ ଏ ମୂର୍ତ୍ତିକୁ କିଏ ରୂପଦାନ କଲା ? ଜାନକୀ ଯେଉଁ ଫୁଲପକା ଶାଢ଼ୀପିନ୍ଧେ, ଠିକ୍ ସେହିପରି ଶାଢ଼ୀ ଏ ପାଷାଣ ବିଗ୍ରହ ପରିଧାନ କରିଛି । ବୋଧହୁଏ କୌଣସି କଳା କୁଶଳୀ ଜାନକୀକୁ ସମ୍ମୁଖରେ ରଖି ଏ ପାଷାଣ ବିଗ୍ରହକୁ ଖୋଦିତ କଲା । ସେହି ବେଶ, ସେହି କେଶ, ଚଞ୍ଚଳ ଚଳନର ସେହି ମଧୁର ପଦବିନ୍ୟାସ—ବାସ୍ତବିକ ରୂପକାରର ଏ ଅପୂର୍ବ ସୃଷ୍ଟି, ଶିଳ୍ପୀର ସମସ୍ତ ନୈପୁଣ୍ୟ ନେଇ ଠିଆ ହୋଇଛି ।

"ମୁଁ ଫେରିଲାବେଳେ ଭଦ୍ରଲୋକଙ୍କୁ ପଚାରି ବୁଝିଲି ଯେ, ଏହି ପାଷାଣ ପ୍ରତିମା ତାଙ୍କର ପୂର୍ବପୁରୁଷ କେହି କୋଣାର୍କ

ମନ୍ଦିରରୁ ସୌନ୍ଦର୍ଯ୍ୟ ଲୋଭରେ ନେଇ ଆସିଥିଲେ । ପୁରୁଷାନୁକ୍ରମେ ଏ ଘରେ ସେହିପରି ଭାବରେ ରକ୍ଷିତ ହୋଇଛି ।

"ମୁଁ ଫେରିଆସିଲି; କିନ୍ତୁ ମୋର ମନକୁ ସମ୍ଭାଳି ପାରିଲି ନାହିଁ । ଜାନକୀର ସ୍ମୃତି ହୃଦୟରେ ପୁନର୍ବାର ତେଜି ଉଠିଲା । ମୋର ରକ୍ତମାଂସର ଜାନକୀ ବର୍ତ୍ତମାନ ପାଷାଣ ପାଲଟି ସେହି ଭଦ୍ରଲୋକ ଘରେ ରହିଛି । ତେବେ ଏତେ ଯୁଗର ମୂର୍ତ୍ତି, ଆଧୁନିକ ଜାନକୀର ରୂପ-ସୌନ୍ଦର୍ଯ୍ୟ ନେଇ କିପରି ଗଠିତ ହୋଇପାରିଲା, ଏହା ମତେ ଅବାକ୍ କରିଦେଲା । ସେହି ନାକ, ସେହି ଅଧର, ସେହି ବକ୍ଷପଟ; ଏତେ ଟିକିଏ ଭିନ୍ନ ନାହିଁ !

"ତେବେ କରିବି କଣ ? ସେଇ ମୂର୍ତ୍ତିଟିକୁ ନିଜର କରିନେବି ? ଜାନକୀକୁ ପ୍ରସ୍ତର ବିଗ୍ରହ ରୂପେ ପୂଜା କରିବି ? ମୋର ଆଖି ଆଗରେ ଚିରଦିନ ତାର ରୂପରେଖ ନାଚି ଉଠିବ । ଏହି ଆଶା ହୃଦୟରେ ପୋଷି ପରଦିନ ଭଦ୍ରଲୋକଙ୍କ ଘରେ ପୁଣି ଚୋରି ମୂର୍ତ୍ତିଟି ନେଇ ଆସୁଥିବାବେଳେ ଧରାପଡ଼ିଲି । ଫଳରେ ଯାହା ହେଲା, ଆଜି ତାର ଏ ପରିଣାମ ।"

ଲୋକଟାର ଏ ବିବୃତ୍ତି ଶୁଣି ମୋ ମନରେ ଯୁଗପତ୍ ବିସ୍ମୟ ଓ କୌତୂହଳ ଜାତ ହେଲା । ମୁଁ କହିଲି—"ଅପିଲରେ ନିଶ୍ଚୟ ତୁମର ଖଲାସ ହେବ । ଅପିଲ କରିବା । "

ସେ ଜବାବ ଦେଲା—"ସେଥିରେ ଲାଭ କଣ ? ବରଂ କାରାଗାର ଭିତରେ ଜାନକୀର କଥା ଭାବିବାକୁ ଯଥେଷ୍ଟ ଅବକାଶ ପାଇବି ।"

ଏହା ପରେ ତାକୁ ମୁଁ ଆଉ କ ଉତ୍ତର ଦେଇ ପାରନ୍ତି ? କିନ୍ତୁ ପରକ୍ଷଣରେ ଲୋକଟା ତାର ତେଜୋଦ୍ଦୀପ୍ତ ଅଦ୍ଭୁତ ଦୃଷ୍ଟି ମୋ ଆଡ଼କୁ ଫେରାଇ ଆଣି ଆରମ୍ଭ କଲା, "କିନ୍ତୁ ବନ୍ଧୁ, ଗୋଟିଏ ସନ୍ଦେହ ଆଜି ମୋତେ ବ୍ୟସ୍ତ କରେ ଯେ, ଜାନକୀ ବୋଲି ଇହ-ସଂସାରରେ କେହି କେବେ ଥିଲା କି ନା । ମଦ୍ୟପାନରେ ଦୁର୍ବଳ ଅର୍ଦ୍ଧପାଗଳ, ବିକୃତ ମନ ମୋର ସେ ଦିନ ସେ ମୂର୍ତ୍ତିକୁ ଦେଖି-ଦେଖି ବୋଧହୁଏ ଜାନକୀର ଗୋଟାଏ କଳ୍ପନା କରିଛି ମାତ୍ର । ସେହି କଳ୍ପନା ମୋର ଦୁର୍ବଳ ମନକୁ ଆଜଯାଏ ଅଧିକାର କରି ରଖିଛି ବୋଧହୁଏ । ଏହି ସନ୍ଦେହ ମୋ ମନକୁ ଘାଣ୍ଟୁଛି ।

—ଃ୦ଃ—

# ଯଥା ପୂର୍ବଂ ତଥା ପରମ୍

ଉପେନ୍ଦ୍ର ପ୍ରସାଦ ମହାନ୍ତି, ବି· ଏ, ଡି· ଇଡ଼,

—୧—

ସାଆନ୍ତାଣୀ ରାଧିକାଦେବୀଙ୍କ ଚରିତରେ ଆଉ କିଛି ଦୋଷ ଥାଉ ବା ନ ଥାଉ, ଗୋଟାଏ ଦୋଷ ନିଶ୍ଚୟ ଥିଲା—ସେଟା ହେଉଛି ତାମ୍ବୁଲଦୋଷ । ରାଧିକାଦେବୀ ସବୁ ତ୍ୟାଗ କରି ପାରନ୍ତି, କିନ୍ତୁ ସେଟା ତ୍ୟାଗ କରିବା ତାଙ୍କ ପକ୍ଷରେ ଅସମ୍ଭବ । ଚବିଶ ଘଣ୍ଟା ରାଧିକାଙ୍କ ପାଟିରେ ପାନ ନ ରହିଲେ ତାଙ୍କ ମିଜାଜ ଠିକ୍ ରହେ ନାହିଁ, ସେ ଏକାବେଳକେ ବାଘୁଣୀ ହୋଇଯାଆନ୍ତି । ସେତେବେଳେ କାହାକୁ ଯେ କଣ କହିବସନ୍ତି, ତାର ଇୟତ୍ତା ରହେ ନାହିଁ । ଖାସ ଏଥି ପାନ ଯୋଗାଇବା ପାଇଁ ତାଙ୍କ ପକ୍ଷରେ ଗୋଟାଏ ଦାସୀ ଖଞ୍ଜା । ତା ନାଁ—ମେଙ୍କୀ । ମେଙ୍କୀ ଗୋଟାଏ ରୂପାବଟାରେ ପାନ ଭାଙ୍ଗି ବରାବର ମହଜୁଦ୍ ରଖିଥାଏ, ଆଉ ସବୁବେଳେ ସାଆନ୍ତାଣୀଙ୍କ କଡ଼େ କଡ଼େ ଥାଏ । ଯେତେବେଳେ ସାଆନ୍ତାଣୀଙ୍କ ପାଟିରୁ ପାନ ସରିଆସେ, ପାନବଟା ମେଙ୍କୀ ନେଇ ହାଜର ହୋଇଯାଏ । ସାଆନ୍ତାଣୀ ଦି’ ଗାଲରେ ଦି ଖିଲ ପାନ ଭର୍ତ୍ତି କରି ପୁଣି ଚୋବାଇ-ବାରେ ଲଗିଯାଆନ୍ତି । ବସିଲେ କ’ଣ ଉଠିଲେ କଣ, ସାଆନ୍ତାଣୀଙ୍କ ସାଙ୍ଗେ ସାଙ୍ଗେ ବରାବର ଗୋଟାଏ ପ୍ରକାଣ୍ଡ ପିତଳ ପିକଦାନି

ଗୁଳିଥାଏ ଏବଂ ମୁହୂର୍ତ୍ତିକୁ ମୁହୂର୍ତ୍ତ ସାଆନ୍ତାଣୀ କଚ୍ରର କଚ୍ରର କରି ସେଥିରେ ପିକ ଉପରେ ପିକ ବୃଷ୍ଟି କରୁଥାନ୍ତି ।

ମେଙ୍କୀ ରାଧିକାଦେବୀଙ୍କର ପୁରାତନ ଦାସୀ । ଦାସୀ କାହିଁକି, କେତେକ ପରିମାଣରେ ସହଚରୀ କହିଲେ ମଧ୍ୟ ଚଳେ । କାରଣ ରାଧିକାଦେବୀ ଯେଉଁଠି, ମେଙ୍କୀ ସେଇଠି । ରାଧିକା କଣାଣ ଘରେ ବସି ଗୋଷେଇର ବରାଦ କରୁଚନ୍ତି ତ, ମେଙ୍କୀ ପାନବଟା ଓ ପିକଦାନୀ ନେଇ ପାଖରେ ଜଗୁଛି । ରାଧିକା ଆଜ ବୃନ୍ଦାବତୀ ରାତିରେ ସାହିଗସ୍ତରେ ବାହାରି ପଡ଼ି ଦାମବୋଉଙ୍କ ଘରର ମଝି ପରସ୍ତରେ ବସି ପାଞ୍ଚ ଗଣ୍ଡା ମାଈକିନାଙ୍କୁ ନେଇ ଆଖଡ଼ା ଜମେଇ ଦେଇଛନ୍ତି ତ ମେଙ୍କୀ ସେଠାରେ ପାନବଟା ଓ ପିକଦାନ ଧରି ଠିଆ ହୋଇଛି । ଲୋକେ କହନ୍ତି, ରାଧିକାଦେବୀ କାୟା—ମେଙ୍କୀ ତାଙ୍କ ଛାୟା । କେବଳ ରାତିରେ ସାଆନ୍ତାଣୀଙ୍କୁ ପହଡ଼ିବେଳେ ମେଙ୍କୀକୁ ଯାହା ଟିକିଏ ଛୁଟି ମିଳେ, ତା ନ ହେଲେ ନାହିଁ । ହେଲେ, ସାଆନ୍ତାଣୀଏ ପହଡ଼ି ଯିବା ପୂର୍ବରୁ ଦଶ-ବାର-ପନ୍ଦର ଖିଲିପାନ ଆଣ୍ଡି କରି ଭାଙ୍ଗି, ବଟାରେ ରଖି ସାଆନ୍ତାଣୀଙ୍କ ମୁଣ୍ଡ ତକିଆ ପାଖରେ ଥୋଇ ଦେଇ ଆସିଥାଏ, ଆଉ ପିତଳ ପିକଦାନୀଟା ମଧ୍ୟ ଯଥାସ୍ଥାନରେ ରଖିଦେଇ ଆସିଥାଏ । ରାଧିକାଙ୍କର ପ୍ରାୟ ପାଞ୍ଚ ସାତ ଥର ରାତିରେ ନିଦ ଭାଙ୍ଗେ ଏବଂ ସେତେବେଳେ ସେ ପାନବଟା ଅଣ୍ଡାଳି ବସନ୍ତି ଓ ପାନ ହି ଖଣ୍ଡ ହ'ଗାଲରେ ଗୁଞ୍ଜି କଚ୍ରର କଚ୍ରର କରି ଗୁଡ଼ାଏ ପିକ ପକେଇ ପୁନଶ୍ଚ ନିଦରେ ପଡ଼ିଯାନ୍ତି ।

କିନ୍ତୁ ଏତେ କରି ସୁଦ୍ଧା ମେଙ୍କୀ ଯେ ଦିନରେ ପଚାଶ ଥର ସାଆନ୍ତାଣୀଙ୍କ କଡ଼ାଗଳାର ଝଙ୍କାର ନ ଶୁଣେ, ତା ନୁହେଁ । ପାନଭଙ୍ଗାରେ ଟିକିଏ କିଛି ଦୋଷ ରହିଗଲେ, ରାଧିକା ନିଆଁବାଣ

ହୋଇଉଠନ୍ତି ଏବଂ ଗର୍ଜନତର୍ଜନ କରି ହରିବ୍ରହ୍ମ କମ୍ପାଇ ଦିଅନ୍ତି । ମେଙ୍କୀର ଚଉଦହ ପୁରୁଷ ପର୍ଯ୍ୟନ୍ତ ଶ୍ରାଦ୍ଧ ବଡ଼ାହୁଏ । କୌଣସି ଗାଳିଟା ଯେ ବାଦ ପଡ଼େ, ତା ନୁହେଁ, କିନ୍ତୁ ମେଙ୍କୀ ଏ ସବୁ ପ୍ରାପ୍ୟ ବରଦାସ୍ତ କରିଯାଏ; ଏ କାନରେ ଶୁଣି ସେ କାନରେ ବାହାର କରିଦିଏ । ସେ ଜାଣେ, ସାଆନ୍ତାଣୀଙ୍କର ମୁହଁଟା ସିନା ଖରାପ, କିନ୍ତୁ ଭିତରଟା ଭଲ । ପ୍ରକୃତରେ ରାଧିକାଦେବୀ ମେଙ୍କୀ ଉପରେ ଯେତେ ଜୁଲମ କାଢ଼ନ୍ତି, ତେତିକ ମଧ୍ୟ ତାକୁ ଆଦର କରନ୍ତି; ଯେତିକ ଗାଳିମନ୍ଦ ଦିଅନ୍ତି, ତେତିକ ହିଁ ସାଉଁଳାନ୍ତି । ମିଜାସ ଖୁସି ଥିଲେ ରାଧିକାଦେବୀ ଗୋଟାମତେ ମେଙ୍କୀର । ମେଙ୍କୀ ଯଦି ପାନଟା ଭଲକରି ଭାଙ୍ଗି ଦେଇଛି, ରାଧିକାଙ୍କ ଆଦର ଦେଖେ କିଏ ? ସାଆନ୍ତାଣୀ ସେତେବେଳେ ବିଲକୁଲ୍ କରୁଣାର ଅବତାର ପାଲଟିଯାଇ ଅତ୍ୟନ୍ତ ସୂକ୍ଷ୍ମଗଳାରେ କହନ୍ତି—"ମେଙ୍କୀ ଲୋ, ମୋ ମେଙ୍କ ! କେସି ମଜା ପାନ ଭାଙ୍ଗିଛୁ ଲୋ ମେଙ୍କ ! ପୋଡ଼ାମୁହାଁ, ସବୁବେଳେ ଏହିପରି ପାନ ଭାଙ୍ଗିଦେଲେ ମୁଁ କାହିଁକି ଏତେ ହକ୍‌ଦାର ହୁଅନ୍ତି, କହ ନି ? ହୁଁ,—ମଗଜ – ମଗଜ ତ ସାତ କାହାଣ । ସେତିକ ଯଦି ଗୁଡ଼ିଦିଅନ୍ତୁ, ସୁନାମୁଣ୍ଡାଏ ହୋଇଯାନ୍ତୁ ତୁ ।"

ଖାଲି ଏତିକ ନୁହଁ, ଅନ୍ୟାନ୍ୟ ଦାସଦାସୀ ଅପେକ୍ଷା ରାଧିକା-ଦେବୀ ମେଙ୍କୀକୁ ଟିକିଏ ବେଶି ଦେଖିପାରନ୍ତି । ନିଜେ ଯେତେବେଳେ ଖାଇବସନ୍ତି, ମେଙ୍କୀକୁ ସେ ପାଖରେ ବସାଇ ଖୁଆନ୍ତି । "ଆଉ କଣ ଖାଇବୁ ଲୋ ମେଙ୍କୀ—ଟିକିଏ ରାଇ ତରକାରି ନବୁ ? ଟିକିଏ ଆମ୍ବିଲ ଢାଳିଦେଇଯା ... ରେ ବନମାଳିଆ—" ଇତ୍ୟାଦି ଇତ୍ୟାଦି କେତେ କଥା କହି ସେ ମେଙ୍କୀର ଆତ୍ମସନ୍ତୋଷ କରିବାକୁ ଚେଷ୍ଟା କରନ୍ତି ଏବଂ ତାକୁ ପେଟେ ଖୁଆଇ ତେବେ ଯାଇ ଉଠନ୍ତି ।

ଏଥିରେ ଅନେକ ସମୟରେ ମେଙ୍କୀ ଅନ୍ୟ ଦାସୀଙ୍କର ଚକ୍ଷୁଶୂଳ ହୁଏ । ବେଳ ପଡ଼ିଲେ କିଏ କେତେ ରକମ କଟାକ୍ଷ କରେ । କିଏ କହେ—"ମେଙ୍କୀ ଏ ଘରର ସାନ ପଟ୍ଟରାଣୀ, ନନ୍ଦପୁରର ନନ୍ଦରାଣୀ ।" ଆଉ କିଏ କହେ—"ଯା ମଲୁ; ଆମର ସେଥିରେ କଣ ଅଛି ମ ? ସେଇଟା ସାଆନ୍ତାଣୀଙ୍କ ସରଗକୁ ନେବ ତ ନେଉ !" କିନ୍ତୁ ସାଆନ୍ତାଣୀଙ୍କ କାନରେ ଏ ସବୁ କଥା ବାଜେ ନାହିଁ । ମେଙ୍କୀ ମୁହଁରେ ମଧ୍ୟ ଏପରି କେହି କହିବାକୁ ସାହସ କରେ ନାହିଁ । ଖାଲି ପଛଆଡ଼େ ଭୁଟ୍‌ଭାଟ୍ ହୁଅନ୍ତି ।

—୨—

"ହଇ ଲୋ ପୋଇଲି ! ତୋତେ ଏ ଘରୁ ନିକାଲି କରି ତେବେ ଯାଇଁ ମୁଁ ପାଣି ଛୁଇଁବି—ଏଟା ମୋର ପ୍ରତିଜ୍ଞା । ତୋ ମୁଣ୍ଡରେ ଶିଙ୍ଗ ଉଠିଲାଣି ପରା ହାରାମଜାଦୀ !"

ସେ ଦିନ ରାଧିକା ଉଗ୍ରଚଣ୍ଡୀ ପାଲଟି ଯାଇଥିଲେ । ମିଜାଜ୍ ପାରା ଲାଲ ହୋଇଯାଇଥିଲା । ତୁଣ୍ଡରୁ ଖାଲି ଝାଳମାଳ କଥା ବାହାରୁଥିଲା । ରାଧିକାଦେବୀ ଉଠିଲେଣି ସକାଳୁ । ବିଛଣାରୁ ଉଠି ମୁହଁହାତ ଧୋଇ ରାଧିକା ଦେଖିଲେ ଯେ, ତାଙ୍କର ନାକର ସୁନା ତିଳଫୁଲଟା ନାହିଁ, କେତେବେଳେ କୁଆଡ଼େ ଖସିପଡ଼ିଛି । ବଡ଼ ବିପଦର କଥା ! ସୁନା ହଜିଲେ ଲକ୍ଷ୍ମୀ ଛାଡ଼େ—ଘରର ଅମଙ୍ଗଳ, ପୁଣି ଆଜି ଗୁରୁବାର—ଲକ୍ଷ୍ମୀବାର । ରାଧିକାଦେବୀ ବ୍ୟସ୍ତ ହୋଇ ଦାସୀ-ପୋଇଲି ସମସ୍ତଙ୍କୁ ଲଗାଇ ତିଳଫୁଲର ତଲାସ କଲେ । ବିଛଣା ଥରେ, ଦୁଇ ଥର, ତିନି ଥର ଝଡ଼ାଗଲା । ବାସିବିଛଣାରୁ ଉଠି ରାଧିକା ବାଡ଼ି ଆଡ଼କୁ ଯାଇଥିଲେ । ସେ ବସ୍ତାଟି ତିନି ଥର ଚନ୍ନ ଚନ୍ନ କରି ଖୋଜାଗଲା । କିନ୍ତୁ କାହିଁ ? ହଜିଲା ଚିଜର ଆଦୌ ପତ୍ତା ମିଳିଲା ନାହିଁ । ସାଆନ୍ତାଣୀ ଘଡ଼ିଏ ଗୁମ୍ ହୋଇ ବସିଗଲେ ।

ତା ପରେ ଗୋଟାଏ ନିଶ୍ୱାସ ଛାଡ଼ି ଉଠିଲେ । ଘଅଁ-ଦେବତାଙ୍କୁ ଉଦ୍ଦେଶ୍ୟ କରି ତିନି ଥର ହାତଯୋଡ଼ି ଜୁହାର ହେଲେ । ଗ୍ରାମର ଯାଗୁଳାଈ ଠାକୁରାଣୀଙ୍କୁ ମନେ ମନେ ଡାକି କହିଲେ, "ମା ଯାଗୁଳାଈ ! ତୁମ୍ଭେ ରକ୍ଷା କର, ତୁମ୍ଭେ ଭରସା ! ଏ ଘର ଉପରେ ଯେପରି କିଛି ବିପତ୍ତି ନ ପଡ଼େ ମା !" ତା ପରେ ରାଧିକା ବିଷଣ୍ଣ ମନରେ ଯାଇ ଦାନ୍ତଘଷି ବସିଲେ । ଅନ୍ୟମନସ୍କ ଥାଇ ଜିଭ ଛେଲୁ ଛେଲୁ ଜିଭ ଟିକିଏ କଟି ଯାଇ ରକ୍ତ ବହିଲା । ତା ପରେ ଦାନ୍ତ ଘଷି ସାରି ଆସୁ ଆସୁ ଅକସ୍ମାତ୍ ଦୁଆରବନ୍ଧଟାକୁ ଝୁଣ୍ଟି ପଡ଼ି ରାଧିକା ଚିତ୍କାର କରିଉଠିଲେ—"ଉହୁ-ହୁ ! ସକାଳଟାରୁ ଆଜି କିଏ ଗାଳି ଦେଉଛି ମ ! ମୁଁ କାହାର ଚୌଦପୁରୁଷର ଖାଏ ନା ଧାରେ ?" ଏଉତ୍ତରୁ ମେଙ୍କୀ ଉପରେ ଚାଲି ଛୁଟିଲା । ମେଙ୍କୀ କାହିଁକି ବିଛଣା ଉଠାଇ ପାନବଟା ପିକଦାନି ଆଣିବା ବେଳେ ଭଲକରି ଗୁଡ଼ିଆଡ଼ିକୁ ନଜର ନ ଦେଲା ? ତିଳଫୁଲଟା ବିଛଣାରେ ନ ପଡ଼ି ଆଉ କୁଆଡ଼େ ଗଲା ? ମେଙ୍କୀ କହିଲା—"ମୋର କି କସୁର ମ, ମୁଁ ତ ଖୁବ୍ ଭଲ କରି ଦେଖିଛି, ବିଛଣାରେ କିଛି ହେଲେ ପଡ଼ି ନ ଥିଲା । ମିଛଟାରେ ମୋ ଉପରେ କାହିଁକି ଭଣିଭଣି ହେଉଛ ?" ରାଧିକା ଏହା ଶୁଣି ଆହୁରି ଚିଡ଼ି ଉଠିଲେ । ତାଙ୍କ ମୁହଁରେ ଜବାବ୍ ଦେଲେ ସେ ସହିପାରନ୍ତି ନାହିଁ ଦାନ୍ତରେ ଦାନ୍ତ ରଗଡ଼ି କହିଲେ—"କଣ କହିଲୁ ଲୋ ! ମିଛଟାରେ ମୁଁ ଭଣିଭଣି ହେଉଛି ? ସତ୍ୟନାଶିଆଣୀ, ତୋର ତ ଭାରି ଦମାକ୍ ହେଲାଣି ! ପୋଇଲୀଙ୍କି ଆଦର କଲେ ପୋଇଲୀ ଏ ମୁଣ୍ଡରେ ଚଢ଼ନ୍ତି । କଥା କହୁଛି ଦେଖ ! ତିଳଫୁଲଟା ବିଛଣାରେ ନ ପଡ଼ି ଆଉ କଣ କୁଆଡ଼େ ଉଡ଼ିଗଲା ? ହାରାମ୍‌ଜାଦୀ, ଆଉ ବେଳେ ମୋ କଥାରେ ଜବାବ ଦେବୁ ତ ତୋର ଦିନେ କି ମୋର ଦିନେ ।" ରାଧିକା ଏହା କହି ଦୁମ୍ ଦୁମ୍ କରି ଭୂଇଁରେ ହାତ କଚାଡ଼ିଲେ । ମେଙ୍କୀର

ଆଖି ଦୁଇଟି ଛଳଛଳ ହୋଇଉଠିଲା । ହାୟ୍‌ ! ହାୟ୍‌ ! ଆଜ ଗୁରୁବାର ପରା ଦିନେ ସକାଳୁ ଏଇୟା ଶୁଣିବାକୁ ଥିଲା ? ହାୟରେ କପାଳ ! ବିନା ଦୋଷରେ ମୁଁ ହେଲି ଦୋଷୀ ! ଏ କେଉଁ ରାଇଜର କଥା ! ସୁନା ହଜେଇବେ ସାଆନ୍ତାଣୀ, କସୁର ହେବ ମେଙ୍କୀର ! ଯାହାହେଉ, ମେଙ୍କୀ ମୁହଁ ବୁଲେଇ ଆଖିରୁ ଡଳ ଡଳ ହୋଇ ଖସି ପଡ଼ିବାକୁ ଯାଉଥିବା ଲୁହ ଦି ଠୋପା ହାତ ପିଠିରେ ପୋଛି-ପକାଇଲା । ତା ପରେ ସାଆନ୍ତାଣୀ ବୈକୁଣ୍ଠି ଆ-ମା ଦାସୀକୁ ସାଙ୍ଗରେ ନେଇ ସ୍ନାନ କରିବାକୁ ପୋଖରୀତୁଠକୁ ଗଲେ । ମେଙ୍କୀ ପାନ ଭାଙ୍ଗିବାକୁ ବସିଗଲା ।

ସ୍ନାନ ସାରି ରାଧିକାଦେବୀ ଆସି କେ ଥର ଫିଟାଇ ମହା-ପ୍ରସାଦ ସେବା କଲେ । ଆଉ ମୁହଁ, ହାତ, ପିଠି, କାଖ, କଙ୍କାଳ ସବୁଆଡ଼େ ତିଳକ ନେଲେ । ସେବାପରେ ତାଙ୍କର ପାନଖିଆ ଆରମ୍ଭ ହୁଏ । ମେଙ୍କୀ ପାନବଟା, ପିକଦାନୀ ଆଣି ପାଖରେ ହାଜର ହେଲା ଓ ସାଆନ୍ତାଣୀଙ୍କ ହାତକୁ ଦି ଖଣ୍ଡ ପାନ ବଢ଼ାଇ-ଦେଲା । ରାଧିକା ତାହା ଯଥାବିଧି ଦି'କଳରେ ଗୁଞ୍ଜି ପାଟି ବୁଲାଇ-ବାକୁ ଆରମ୍ଭ କରିଦେଲେ । କିନ୍ତୁ ଏ କଣ ? ମୁହୂର୍ତ୍ତକ ପରେ ଆ—ଥୁ—ଥୁ ! ପାଟି ଚୂନ ଖାଇଗଲା ପରା ! ସାଆନ୍ତାଣୀ ଦି ଖଣ୍ଡ-ଯାକ ପାନ ପାଟିରୁ କାଢ଼ିପକାଇ ଗର୍ଜିଉଠିଲେ—"ତୋର କଣ ଆଉ ଏ ଘରେ ରହିବାର ଇଚ୍ଛା ନାହିଁ ଲୋ ହାରାମ୍‌ଜାଦୀ ! କେଉଁ ଜନ୍ମରେ ପାନ ଭାଙ୍ଗି ଶିଖିଥିଲୁ କହିଲୁ ? କେଉଁ ଚୌଦପୁରୁଷ ତୋର ପାନ ଖାଇଥିଲେ ଶୁଣେ ?" ଏହା କହି ସେ ସମଗ୍ର ପାନବଟାଟା ମେଙ୍କୀ ଉପରକୁ ନିକ୍ଷେପ କଲେ । ମେଙ୍କୀର ମନଟା ପୂର୍ବରୁ ଟିକିଏ ରହିଥିଲା । ବର୍ତ୍ତମାନ ଏ ବ୍ୟବହାରରେ

ସେ ବଡ଼ ଉତ୍ତେଜିତା ହୋଇଉଠିଲା । ଅନ୍ୟାନ୍ୟ ଗୃହକର୍ତ୍ତା ଗୃହକର୍ତ୍ତ୍ରୀ ଆଣି-ଗୁଡ଼ାକ ଅଳ୍ପଦୂରରେ ଥାଇ ଘଟଣାଟା ଲକ୍ଷ୍ୟ କରୁଥିଲେ । ଏପରି ଅବସ୍ଥାରେ ମେଙ୍କୀ ନିଜକୁ ଘୋର ଅପମାନିତ ମନେକରି କହିଲା— "ମୋର ଚୌଦପୁରୁଷ ତ ଗରିବ ଥିଲେ ମା, ଯାନ କେଉଁଠୁ ପାଇବେ ? ମୋର ବି ଆଉ ଏ ବଡ଼ଲୋକ ଘରେ ରହିବାର ଦରକାର ନାହିଁ । ଏ ଘରେ ଢେର ଦିନ ହୋଇଗଲାଣି । ଆଜି ମତେ ବିଦାୟ କରି ଦିଅ, ମୁଁ ଚାଲିଯାଏଁ ।"

ରାଧିକାଦେବୀ ଡମ୍ବ ପରି ଫଣା ଟେକି ଉଠି କହିଲେ — "କଣ ? କଣ କହିଲୁ ଲୋ ନିମକ୍‌ହାରାମ୍ ପୋଇଲୀ ?"

ମେଙ୍କୀ ପୂର୍ବପରି ଅବିଚଳିତ ଭାବରେ ଉତ୍ତର ଦେଲା—"ମୁଁ କହୁଛି, ମୋତେ ଆଜି ଦରମା ପଇସା ଦେଇ ବିଦା କରିଦିଅ ମା ! ମୁଁ ଆଉ ଏଠି ରହି ଚଳିପାରିବି ନାହିଁ । ଦିହ ଖଟାଇ ଆଉ କେଉଁଠି ଦି ପଇସା କରିପାରିଲେ ପାରିବି, ନ ପାରିଲେ ନାହିଁ । ସେ ମୋର କପାଳ !"

ଏହା କହି ମେଙ୍କୀ କ୍ରୋଧରେ, ଅଭିମାନରେ ଜରଜର ହୋଇ ଠିଆ ହୋଇ ରହିଲା । ରାଧିକାଦେବୀଙ୍କର କ୍ରୋଧ ମଧ୍ୟ ପଞ୍ଚମକୁ ଉଠିଗଲା । ସେ କହିଲେ—"ଆଚ୍ଛା, ଏହି କଥା ତ ? ତେବେ ଦେଖାଯିବ ।" ତା ପରେ ସେ ତର୍ଜ୍ଜନୀ ହଲାଇ କହିଲେ— "ହଉ ଲୋ ପୋଇଲୀ ! ତୋତେ ଆଜି ଏ ଘରୁ ନିକାଲି କରିବି, ତେବେ ଯାଇ ମୁଁ ପାଣି ଛୁଇଁବି—ଏଟା ମୋର 'ପ୍ରତିଜ୍ଞା' । ତୋ ମୁଣ୍ଡରେ ଶିଙ୍ଗ ଉଠିଲାଣି ପରା ହାରାମ୍‌ଜାଦୀ !"

— ୩ —

କଚେରୀ ଘଣ୍ଟାରେ ଠଂ ଠଂ ହୋଇ ଏଗାରଟା ବାଜିଗଲା । କଚେରୀ ଭାଙ୍ଗିଲା । ଅଳ୍ପକ୍ଷଣ ପରେ ବଡ଼ ହୋପଟାଙ୍କ ପେସ୍କାର-ବାବୁ ଏବଂ ରାଧିକାଦେବୀଙ୍କ ସ୍ୱାମୀ ଶ୍ରୀ ଗଜାନନ ମହାପାତ୍ରେ ଲମ୍ବଖିଆ ବର୍ତ୍ତୁଳ ପେଟ ଆଗକୁ କାଢ଼ି, ଫାଇଲ ଧରି ଆସି ଘରେ ପହଞ୍ଚିଗଲେ ।

ଘରେ ଗୋଡ଼ ଦେବା ମାତ୍ରେ ରାଧିକାଦେବୀ ଟର୍ ଟର୍ ହୋଇ ଆସି କହିଲେ—"ତମେ ଥରେ ଗୋଟାଏ କିଛି "ବ୍ୟବସ୍ଥା" କରିବ ତ କର, ନ ହେଲେ ତମ ଘର ତମେ ସମ୍ଭାଳ; ମୁଁ ଯାଉଛି ।"

ଗଜାନନବାବୁ ଧୀରସ୍ଥିର ଭାବରେ ପଚାରିଲେ—"କଥା କ'ଣ, କଥା କ'ଣ ? କେଉଁଠିକି ଯାଉଛ ?"

ରାଧିକା ବିରକ୍ତ ହୋଇ ଜବାବ ଦେଲେ—"ଗାତକୁ ଆଉ ଚୂଲିକୁ । ତମର ସବୁବେଳେ ସେଇ ଠାପରା ! ଏଥିପାଇଁ ତମ ଉପରେ ମୋର ହାଡ଼ଜ୍ଵଳ ଉଠେ ।"

ତା ପରେ ସେ ଜୋର୍ ଗଳାରେ କହିଲେ, "ମୁଁ ଯାହା କହୁଛି, ତାହା କରିବ ତ ଜବାବ ଦିଅ, ନ ହେଲେ ଏ ଘରେ ମୁଁ ଅନ୍ନଜଳ ଛୁଇଁବି ନାହିଁ ।" ଏହା କହି ସେ ଗୁଡ଼ାଏ ବରବର ହେବାକୁ ଲାଗିଲେ, ଟିକିଏ କାନ୍ଦ କାନ୍ଦ ମଧ୍ୟ ହୋଇଉଠିଲେ । ଆଖିରେ ଲୁଗାକାନି ଗୁଞ୍ଜି ସକ ସକ ହୋଇ କହିଲେ, "ହାୟରେ କପାଳ ! ଘର ବୋଲି ଗୋଟାଏ ଦାସୀ, ସେ ପୁଣି ମୋତେ ଏତେ

କଥା କହିବ, ମୋ ଭଗରକୁ ଲଗେଇ ଯା ଇଚ୍ଛା ତା କାଢ଼ିବ ? ମୁଁ ଏ ଗୁଡ଼ାକ କେତେ ସହିବ ? ଏ ହତହତା ଜୀବନଟା ତ ଗଲନାହିଁ ; ଗ୍ରେଟ ଲେକଗୁଡ଼ାକଙ୍କଠାରୁ ଏତେ କଥା ଶୁଣିବାକୁ କପାଳରେ ଥିଲ···ଇତ୍ୟାଦି, ଇତ୍ୟାଦି ।"

ଗଜାନନବାବୁ ଏହା ଶୁଣି ଟିକଏ ସମବେଦନାପୂର୍ଣ୍ଣ ସ୍ୱରରେ ପଚରିଲେ, "କାହିଁକି ଗୁଡ଼ାଏ ଏମିତି ହଉଚ ମ ? କଣ ହେଲ କହିଲେ ଯିନା କଥାଟା ବୁଝାଯିବ ! ଘଟଣା କଣ ?"

ରାଧିକାଦେବୀ କହିଲେ, "ଆଜି ସେ ହାରାମଜାଦୀ ପୋଇଲୀର ବର୍ତ୍ତନ ଛୁଣ୍ଡାଇଦିଅ, ସେ ଯାଉ । କେଉଁଠି ପୋଇଲୀପଣେ ପଶିବ ପଶୁ । ଖୋଇ ପେଇ ବଢ଼େଇବାରେ ହାରାମ୍‌ଜାଦୀର ମଗଜ—।"

ଗଜାନନ ବାଧା ଦେଇ ପଚରିଲେ, "ହାରାମ୍‌ଜାଦୀଟା କିଏ ?"

ରାଧିକାଦେବୀ ଜବାବ୍ ଦେଲେ, "ଆଉ କିଏ ହବ, ସେହି, ସେହି ତମ ମେକ୍କୀ । ତା ଜିଭରେ ବାଳ ଉଠିଲଣି । ମୋତେ ମୁହଁରେ ଠାଏ ଠାଏ ଜବାବ୍ ଦେଉଚ । ଏ ଘରେ ରହିବାକୁ ତାର ଇଚ୍ଛା ନାହିଁ । ହାଯ୍ଯୁରେ ନିମକ୍‌ହାରାମ୍ ! ମୁଁ କହୁଚି—ତାର ବର୍ତ୍ତନ କଉଡ଼ି ଯାହା ଅଛି ଆଜି ଛିଣ୍ଡାଇ ବିଦାୟ କରିଦିଅ—ଏହି ଲଗେ ବିଦାୟ କରିଦିଅ । ଠିଆଟା ହୋଇ ଶୁଣୁଚ କଣ ମ ? ହିସାବ୍ କରି ଦେଖ ।"

ଗଜାନନବାବୁ ଚପ୍‌କନଟା ଖୋଲୁଁ ଖୋଲୁଁ ମୁରୁକି ମୁରୁକି ହସି ପଚରିଲେ, "ତେବେ ପାନଖର୍ଚ୍ଚଟା ଏତେ ଦିନେ ରହିଲ ପରି

ଦେଖାଯାଉଛି । ହଉ, ଟିକିଏ ଧୈର୍ଯ୍ୟ ଧର, ଏତେ ବ୍ୟସ୍ତ ହଉଚ କାହିଁକି ? ମଥାରେ ଟିକିଏ ଥଣ୍ଡାପାଣି ଦିଅ, ସେଟା ଘୁରି ଗରମ ହୋଇ ଯାଇଛି ।”

ରାଧିକାଦେବୀ ଏ ବ୍ୟଙ୍ଗୋକ୍ତି ଶୁଣି କ୍ଷିପ୍ତପ୍ରାୟ ହୋଇ ଉଠିଲେ । ଗର୍ଜନ ତର୍ଜନ କରି କହିଲେ—“ସେ ସବୁ ବାଜେ କଥା ରଖିଦିଅ । ସେଗୁଡ଼ାକ ବଜାରୀ ଲୋକଙ୍କ ତୁଣ୍ଡକୁ ସାଜେ । ଭଦ୍ରଲୋକ ଯଦି, ତେବେ ଏହିକ୍ଷଣି ତା ବର୍ତ୍ତନ କଉଡ଼ି ଗଣିଦେଇ ତାକୁ ବିଦାୟ କରିଦିଅ, ନ ହେଲେ ମୁଁ ଆଉ ଏ ଘରେ ଅନ୍ନ ଛୁଇଁବି ନାହିଁ, ଆଜି ବିଷ ଖାଇ ମରିବି ।”

ଏହା କହି ରାଧିକାଦେବୀ ମୁହଁ ଫଣ୍ ଫଣ୍ କରି, କାନ୍ଦ କାନ୍ଦ ହୋଇ ନିକଟବର୍ତ୍ତୀ ଗୋଟାଏ ଘରେ ଯାଇ ଦୁମ୍ କରି ମୁହଁ ମାଡ଼ି ଶୋଇପଡ଼ିଲେ ।

ଗଜାନନ ଟିକିଏ ଗୁମ୍ ମାରି ଠିଆହୋଇ ରହିଲେ । ବଡ଼ ମୁସ୍କିଲ କଥା ! ବାପା-ମା ଆଜ୍ଞା ମାଇକିନିଆ ହାତ ଧରାଇଥିଲେ ଯେ, ସଦାସର୍ବଦା ମନ ନେଇ ନେଇ ତେବେ ବି ଚଳିଲା ନାହିଁ । “କ୍ଷଣେ ରୁଷ୍ଟାଃ କ୍ଷଣେ ତୁଷ୍ଟାଃ ରୁଷ୍ଟା ତୁଷ୍ଟା କ୍ଷଣେ କ୍ଷଣେ ।” ଏହା ଭାବି ସେ ମେଙ୍କୀକୁ ଡାକି ଘଟଣାଟା ସ୍ପଷ୍ଟରୂପେ ବୁଝିବାକୁ ଚେଷ୍ଟାକଲେ । ମେଙ୍କୀ ଆଷାଢ଼ ମାସର ମେଘଭରା ଆକାଶ ପରି ମୁହଁଟା ଫଣ ଫଣ କରି ଆସି ଉପସ୍ଥିତ ହେଲା ।

ଗଜାନନ ପଚାରିଲେ, “ଘଟଣାଟା କଣ ଲୋ ମେଙ୍କୀ ? କାହିଁକି ଏତେ ଦୁଷ୍ଟାମି କରୁଛୁ ?” ମେଙ୍କୀ ଅନ୍ୟ ଦିନେ ବାବୁଙ୍କ ସାମନାରେ ଜବାବ୍ ଦିଏ ନାହିଁ, ଆଜି କିନ୍ତୁ ଥମ୍ ଥମ୍ ହୋଇ

କହିପକାଇଲା, "ଦୁଷ୍ଟାମି ଯେ ନ କରିବ ସେହିପରି ଲୋକ ରଖି ମୋତେ ବିଦାୟ କରିଦିଅ ବାବୁ! ଏ ଦୁଷ୍ଟ ଲୋକଟା ତ ଏଠି ରହିବାକୁ ଯୋଗ୍ୟ ନାହିଁ।"

ଗଜାନନବାବୁ ଏହା ଶୁଣି ଟିକିଏ ମୁରୁକି ହସା ଦେଇ କହିଲେ—"ମଲା, ମଲା, ତୁ କ'ଣ ପଞ୍ଚମରେ ଚଢ଼ିଛୁ ପରା! ଯେସା ସାଆନ୍ତାଣୀକୁ ତେସା ଦାସୀ ମିଳିଛି। ତାହାଙ୍କୁ ଏତେ କଥା ପଚାରି ବୁଝିବାର ବାଟ ନାହିଁ। ଅରେ! ଘଟଣାଟା କଣ ହେଲା କହ।"

ମେଙ୍କୀ କହିଲା—"ହବ ଆଜ୍ଞା କଣ, ମୁଁ ସଫା କଥା କହୁଛି, ମୁଁ ଏଠି ରହିବ ନାହିଁ।"

ଗଜାନନବାବୁ ଏହା ଶୁଣି ଟିକିଏ ମନେ ମନେ ବିରକ୍ତ ହେଲେ ଏବଂ କ୍ଷଣକାଳ ଚୁପ୍ ରହି ପଚାରିଲେ—"ତେବେ ନିଶ୍ଚିନ୍ତ କଣ ତୋର ବାହାରିଯିବାର ଇଚ୍ଛା?"

ମେଙ୍କୀ କହିଲା—"ହଁ।"

ଗଜାନନ କହିଲେ—"ଅଚ୍ଛା ଆଜ୍ଞା! ତୋର ଯଦି ରହିବାକୁ ଇଚ୍ଛା ନାହିଁ, ତେବେ ଜୋରଜବରଦସ୍ତି କରି ତ କେହି ରଖି ପାରିବ ନାହିଁ। ହେଲେ, ଅନେକ ଦିନ ହେଲା ରହିଛୁ ବୋଲି କଥାଟା ପଚାରିଲି।"

ମେଙ୍କୀ ଜବାବ୍ ଦେଲା—"ଯନ୍ତୁଦିନେ ଯେ ଏକ ଜାଗାରେ ମୁକ୍ତି ହୋଇ ରହିଅଛି, ଏପରି କିଛି ତ ନୁହେଁ। କେତେ ଦିନ ଯୋଗାଡ଼ କଲି, ରହିଲି। ଏବେ ମୁନିବ-ମୁନିବାଣୀଙ୍କ ମନ ନେଇ ଚଳେଇ ନ ପାରିଲି, ଆଉ ରହିବା କି ଦରକାର?"

ଗଜାନନବାବୁ ଆଉ ବେଶି ବଢ଼ିଲେ ନାହିଁ । ସେଣି-ଦିନ ମେଙ୍କୀ ବନ୍ଧୁଦନର ମ ସ୍ତାମମତା ତ୍ୟାଗ କରି ରାଧିକାଦେବୀଙ୍କ ଘରୁ ଗୋଡ଼ କାଢ଼ି ବାହାରିଗଲା ।

ସନ୍ଧ୍ୟାବେଳେ ରାଧିକାଦେବୀ ବୈକୁଣ୍ଠିଆ ମା'କୁ ଡାକି ପଚାରିଲେ—"ମେଙ୍କୀଟା କଣ୍ଠ ଖାଇକରି ଗଲା ନା ଅଖିଆ ଗଲା ଲେ ବୈକୁଣ୍ଠିଆ ମା ?"

ବୈକୁଣ୍ଠିଆ ମା କହିଲା—"ହଃ, ଖାଇବାକୁ ବଞ୍ଚଚନ୍ତ । ସେପରି ଲୋକକୁ ଦାନାକନା ମିଳିବ ନାହିଁ ମା ସାଆନ୍ତାଣୀ ! ଦେଖିବ ପୁଣି; ଏପରି ଘରକୁ ନିନ୍ଦା ଯାଉଛି—କେଡେ ହୀନସ୍ଥା ହବ । ଯା କହନ୍ତି, ସର-ଲବଣୀ ଦେଇ ବଡ଼େଇଥିଲ । ଏବେ ଲୋକ ଚିହ୍ନ ମା', ଲୋକ ଚିହ୍ନ ।"

ରାଧିକାଦେବୀ କହିଲେ - "ଯାଉ ପୋଡ଼ାମୁହିଁ । ଗଲା ତ ଗଲା । ତେବେ କଣ କି, ଲକ୍ଷ୍ମୀବାରରେ ଉପାସବେଳରେ ଚାଲିଗଲା, କଥାଟା ଭଲ ହେଲା ନାହିଁ । କେଉଁଠିକି ଗଲା କହିପାରିବୁ ବୈକୁଣ୍ଠିଆ ମା ?"

ବୈକୁଣ୍ଠିଆ ମା ଓଠ ଲମ୍ବେଇଦେଇ କହିଲା—"କିଏ ଜାଣିଛି ମା ସାଆନ୍ତାଣୀ, କେଉଁ ଗାତକୁ ଗଲା, ତା କିଏ ଜାଣେ ? ଧର୍ମ ଗୁଡ଼ିଲେ ଲୋକେ ଏହିପରି ହୁଅନ୍ତି । ମୁନିବମୁନିବାଣୀ ଦାନା ଦେଉଛନ୍ତି, ତାଙ୍କ ଯୋଗେ ବଞ୍ଚିଛି । ହକ କଥାରେ ସେ ହ ପର ବେଜାର ହେଲେ । ଏଥିରେ କଣ ଆମରି ଦେହ ପୋଡ଼ା ହୋଇଗଲା ! କଣ କହିବି ଲୋ ମା ! ମାଇକିନିଆ ଜାତି, ସେ ପୁଣି

ବାବୁଙ୍କ ଆଗରେ କି ମୁହଁଖାଡ଼ କଥା କହିଲି ! ମୁଁ ତ ତାଜବ୍ ହେଉଚି ଲୋ ମା !"

ଏହା କହି ବୈକୁଣ୍ଠିଆ ମା ପାଖକୁ ଘୁଞ୍ଚିଆସି ଫୁସ୍‌ଫୁସ୍ ହୋଇ ରାଧିକାଦେବୀଙ୍କ କାନରେ କହିଲା—"ବୁଝିଲ ନା ମା ସାଆନ୍ତାଣୀ ! ତିଳଫୁଲଟା ସେଇ ନେଇଚି । ତା ନ ହେଲେ···।"

ରାଧିକାଦେବୀ ତୁରନ୍ତ ବାଧା ଦେଇ କହିଲେ—"ଚୁପ୍ ! ସେପରି କଥା ମୋ ଆଗରେ କହିବୁ ନାହିଁ ବୈକୁଣ୍ଠିଆ ମା । ମେଣ୍ଟୀ ଆଉ ଯାହା ହେଉ ପଛେ, ଚୋରଣୀ ନୁହେଁ । ମୁଁ ତାକୁ ଖୁବ୍ ଚିହ୍ନେ ।"

ବୈକୁଣ୍ଠିଆ ମା ସଙ୍ଗେ ସଙ୍ଗେ ଓଲଟିପଡ଼ି କହିଲା—ତା-ତା —ଆଉ କଣ ମା ସାଆନ୍ତାଣୀ, ତମେ କଏ କେମିତିକା ଲୋକ ଜାଣ ନାହିଁ ନା ! ଯାହା କହିଲ, ତା ଠିକ୍ କଥା । ହାତଉଠାପଣ ତ ତାର କେବେ ନ ଥିଲା । ଯାଉ, ସେସବୁ କଥାରୁ କଣ ମିଳିବ ? ଚଣ୍ଡାଳୁଣୀକି କି କୁବୁଦ୍ଧି ଦେଖାଗଲା କୁହ ନି ? ମୁଁ ତାଜବ୍ ହେଉଚି ଲୋ ମା ! ସୁଖ ପୁଣି ଲୋକକୁ ଇମିତି ବାଇ କରେ । ଏଁ ?"

ସେ ଦିନ ରାତିରେ ରାଧିକାଦେବୀ ଗୋପନରେ ତୁହାଏ କାନ୍ଦିଲେ । ମନରେ ତାଙ୍କର ଯେ ଦାରୁଣ କଷ୍ଟ ହେଲା, ତାହା ସେହି ଜାଣନ୍ତି । ଆପଣା ମା ପେଟର ଭଉଣୀଟାଏ ମରିହଜି ଯାଇ-ଥିଲେ ସୁଦ୍ଧା ଲୋକକୁ ଏତେ ବାଧି ନ ଥାନ୍ତା ।

—୪—

ଦୁଇ ମାସ କଟିଯାଇଛି । କେହି ବିଶ୍ୱାସ କରୁ ବା ନ କରୁ ରାଧିକାଦେବୀ ଏ କେତେ ଦିନ ହେଲା ପାନ ଛାଡ଼ି ଦେଇଛନ୍ତି—ବିଲକୁଲ୍ ଛାଡ଼ି ଦେଇଛନ୍ତି । ଆଉ ପୂର୍ବ ପରି ପାନବଟାଟା ସାଆନ୍ତାଣୀଙ୍କ କଡେ କଡେ ବୁଲେ ନାହିଁ; ପିକଦାନୀଟା ସାଙ୍ଗେ ସାଙ୍ଗେ ବୁଲେ ନାହିଁ—ଆଉ ସେ କଚର୍ କଚର୍ କରି ପାନପିକ ପକାଇବା ନାହିଁ । ଏ ସବୁ ଗୁପ୍ତାବାଜି ପରି ଏକାବେଳକେ ଲୋପ ପାଇଯାଇଛି । ରାଧିକାଦେବୀଙ୍କ ମୁହଁଟାକୁ ଚାହିଁଲେ ସଦାସର୍ବଦା ଯେପରି ଛତୁ ଫୁଟିଥାଏ, ସେହିପରି ଜଣାଯାଏ । ଏଥିପାଇଁ କିଏ କେତେ କଥା କହେ, କେତେ ବକ୍ରୋକ୍ତି କରେ, କିନ୍ତୁ ରାଧିକା-ଦେବୀ ସେ ସବୁ ଶୁଣି ସୁଦ୍ଧା ଶୁଣନ୍ତି ନାହିଁ । ଚାକରଚାକରାଣୀଙ୍କ ଭିତରେ ଏ ବିଷୟ ନେଇ କେତେ ଯେ ଆଲୋଚନା ହୋଇଛି, ଟିଟିକାର ଚାଲିଛି, ତାର ଇୟତ୍ତା ନାହିଁ । ବୈକୁଣ୍ଠିଆ ମା କେତେ ଥର ଆସି ରାଧିକାଙ୍କ ହାତରେ ପାନ ଗୁଞ୍ଜିଦେଇ କହିଛି, ଖାଅ, ଖାଅ ମ ସାଆନ୍ତାଣୀ; ଯଦି ଭଲ ନ ଲାଗିବ, ମୋତେ ପଛେ ଦି ଗୋଇଠା ଦିବ ।" କିନ୍ତୁ ରାଧିକାଦେବୀ ବରାବର କହିଛନ୍ତି; "ନା, ନା; ପାନ ଅଭ୍ୟାସଟା ଭାରି ଖରାପ ।"

ମେର୍କୀ ବାହାରିଗଲା ପରେ ସାଆନ୍ତାଣୀଙ୍କର ସଦ୍‌ବୁଦ୍ଧିଟା ହଠାତ୍ ଜାତ ହେବାର ଦେଖି ବୈକୁଣ୍ଠିଆ ମା ଥରେ ନୁହେଁ; ଦି ଥର ନୁହେଁ, ପାଞ୍ଚ ଥର ଯାଇ ବନମାଳୀଆ ଚାକର ପାଖରେ ଫୁସ୍ ଫୁସ୍ ହୋଇ କହିଛି—"ମୁଁ ତାଜିବ୍ ହେଉଚି ଲୋ ମା ! ଯାହା କହନ୍ତି, ଚୋରକୁ ମାନମାରି ଭଙ୍ଗା ପଥୁରିରେ ଖାଇବା—ଏ ସେହିପରି । ଦେଖୁଛୁ ନା ବନମାଳୀ ! ମେର୍କୀଟା ଗଲାଦିନରୁ ସାଆନ୍ତାଣୀଙ୍କର

ପାନଖିଆ ବନ୍ଦ । କ ଲେ ମା, ମେଙ୍କୀ କଣ ପାନରେ ମହୁ ବର୍ଷୁଥିଲ କ ? ତାହାର ହାତ ପାନଟା ସୁଆଦ ଲାଗେ, ଆଉ କାହା ହାତ ବାଜିଲେ ପିତା ହୋଇଯାଏ ? ମୁଁ ଏତେ କରି କହିଲି —'ମା ସାଆନ୍ତାଣୀ, ପାନଖିଆପାଟି; ପାନ ନ ଖାଇଲେ କି ସୁନ୍ଦର ଦିଶିବ ? ପାଟିଟା ଖାଲି ଗେବରିଆ ଗୋବରିଆ ଲାଗିବ; ଖଣ୍ଡେ ଖାଅ, ଭଲକରି, ଆଚ୍ଛା କରି, ଜରଦା ଦେଇ; ତାମ୍ବୁଲବାହାର ଦେଇ, ମସଲା ପକାଇ ଭାଙ୍ଗି ଦଉଚି; ପାଟିରୁ ଅରୁଚି ଛାଡ଼ିଯିବ । ନହେଲେ କଣ ହବ ? ମା କହନ୍ତି—"ଯେତେ କହିଲୁ ଭାଗବତ, ତୋଷ ନୋହିଲା ମୋର ଚିତ୍ତ ।" ମୁଁ ତାଜବ ହଉଚି ଲେ ମା ! ଇମିତି ଅବୁଝା ମଣିଷ ପୁଣି ଗୋଟାଏ ଗୋଟାଏ ଥାଆନ୍ତି !"

ବନମାଳୀଆ କହେ, "ସାଆନ୍ତାଣୀ ପାନ ଖାଇଲେ, ନ ଖାଇଲେ ତୋର ଏତେ ମୁଣ୍ଡ ବଥଉଚି କାହିଁକି ? ତୁ ତ ନାଟ ଦେଖିବୁ । ମେଙ୍କୀ ଗଲା—ତେଙ୍କି ମାନ ମାରିଲା । ତୋର ସେଥିରେ ଯାଏ ଆସେ କଣ ? ତୋତେ ଯଦି ଏତେ ବାଧିଲା, ପୁଣି ମେଙ୍କୀକୁ ଖୋଜିଆଣ ।"

ବୈକୁଣ୍ଠିଆ ମା କହେ—"ହଃ, ମୋ ପୁଅ ଯାଉ ନାହିଁ ମୁଗ-ବାଡ଼ିକି ! ସେ ଛତରଖାଇଟା ଗଲା କେତେ ନା ମଲା କେତେ । ଏଇ କଣ କି—ସାଆନ୍ତାଣୀଙ୍କ ପାନଖିଆ ପାଟିଟାକୁ ଗୁହିଁଦେଲେ ଆଜ ବୁକୁ ଫାଟିଯାଏ । ଆଚ୍ଛା, ତୁ କହିଲୁ ଭଲ ! ମାଇକିନିଆ ଝିଅ, ପାନ ଖଣ୍ଡିଏ ନ ଖାଇବୁ ତ ଆଉ କଣ ଖାଇବୁ ? ପାଟିର ଗନ୍ଧ ମାରିବ କିଏ ? ସେ ଗାଁର ଦନେଇ ସାଆନ୍ତର ଝିଅ କୁମୁଦମାକୁ ଜାଣୁ ଚ ? ସେଇଟା ସେହିପରି । ପାନ ନାଁ ଶୁଣିଲେ ତାହା ନାକ ଟେକିବ । ତୁ ତା ଦାନ୍ତ ଦେଖିଚୁ ନା ?—ଯେମିତି ହେଉଡ଼ା !"

ରାଧିକାଦେବୀଙ୍କ ପାନ ଛାଡ଼ିବା କଥା ନେଇ ଏହିପରି ନାନା ତର୍କବିତର୍କ ଲାଗେ । ସ୍ୱୟଂ ଗଜାନନବାବୁ କେତେ ଥର କହନ୍ତି— "ଆହେ, ପାନଟା କଣ ସତକୁ ସତ ଛାଡ଼ିଦେଲ ? ଏ ତ ଘାର ବିଚିତ୍ର କଥା !"

ରାଧିକାଦେବୀ ଜବାବ୍ ଦିଅନ୍ତି—"ବିଚିତ୍ର କଣ ? ତମେ କିମିତି ହୁକାଖିଆଟା ଛାଡ଼ିଦେଲ ?"

ଗଜାନନ କହନ୍ତି—"ଆମ ହୁକାଖିଆ, ଆଉ ତମ ପାନଖିଆ କଣ ଏକା କଥା ? ଆମକୁ ଡାକ୍ତର କହିଲେ—ଧୂଆଁ ଖାଅ ନାହିଁ, କଲିଜା ବିଗିଡ଼ିଯିବ, ଆମେ ଧୂଆଁ ଖିଆ ଛାଡ଼ିଦେଲୁ । ଆମେ ତ ଆଉ ମେଙ୍କୀଙ୍କି ମାନସିକ ହୁକା ଛାଡ଼ିନାହୁଁ !"

ରାଧିକାଦେବୀ କହନ୍ତି—"ଚିଠିକ କଥା ସେ । ମୁଁ କାହିଁକି କାହାକୁ ମାନସିକ ପାନ ଛାଡ଼ିବି ? ପାନ ଖାଇ ଖାଇ ବିକ୍ ଲାଗିଲା, ମୁଁ ଛାଡ଼ିଦେଲି । ଅଚ୍ଛା, ତମେ ତ ମୋତେ କେତେ ଥର କହୁଥ— ହରଦମ୍ ପାନଗୁଣ୍ଡାକ ଚୋବେଇ ଚୋବେଇ ତମ ଦାନ୍ତଗୁଡ଼ାକ ମୁଗୁନିପଥର ହୋଇଗଲାଣି । ଆଜି ପାନ ଛାଡ଼ିଦେଲି ସେ; କଣ ନା ମେଙ୍କୀ ଲାଗି ଛାଡ଼ିଲା । ଏ ସବୁ ଖାଲି ବଦ୍‌ନାମ ଦେବା କଥା । କି, ମେଙ୍କୀଟା ମୋର କିଏ କି ? ଯିମିତି ଆଉ ଜଣେ କହିବ ତ, ତାଙ୍କ କାନରେ ଶୁଣିବ ।"

ଗଜାନନ ସ୍ତ୍ରୀ ରାଧିକାଦେବୀଙ୍କର ମିଜାଜ୍ ଗରମ ହୋଇ ଉଠିବାର ଦେଖି ଖାଲି ଗୋଟିଏ ଅର୍ଥପୂର୍ଣ୍ଣ 'ହୁଁ' ବୋଲି କହି ଚୁପ୍ ମାରିଯାନ୍ତି ।

ଯାଉ ସେ କଥା । ବର୍ତ୍ତମାନ ଟିକଏ ମେଙ୍କୀର ହାଲଟା କହେଁ ।

ଦୁଇ ମାଇଲ ଦୂରରେ ହଳଧରପୁର ବୋଲି ଗୋଟିଏ ଗାଁ । ସେହିଠାରେ ମେଙ୍କୀ ଖଣ୍ଡିଏ ଗ୍ରେଷ୍ଠ କୁଡ଼ିଆ ବାନ୍ଧି କପାଳକୁ ଆଦର ପଡ଼ିରହିଛି । ରାଧିକାଦେବୀଙ୍କ ଘର ଛାଡ଼ି ଆସିଲାବେଳକୁ ଯାହା-କିଛି ପାଉଣାପତ୍ର ସାଙ୍ଗରେ ଆଣିଥିଲା, ତାହା ଅଧାଅଧି ଖର୍ଚ୍ଚକରି ଏହି ଘର ଖଣ୍ଡି ଛିଡ଼ାକରିଛି । ଏ ପର୍ଯ୍ୟନ୍ତ କେଉଁଠି କାମର ଯୋଗାଡ଼ ହୋଇନାହିଁ । ମେଙ୍କୀ ଚିରଦିନ ସୌଖିନିଆ କାମଟା କରି ଆସିଛି । ଆଜି ଆଉ ଭାଡ଼ କାମକୁ ପାରୁଛି କେତେକେ ? ଦିନେ ସେ ବନୋଦବୋଉ ଘରକୁ ଧାନ କୁଟିବାକୁ ଯାଇଥିଲା; କିନ୍ତୁ ଦିନେ କୁଟି ତିନି ଦିନ ଘରେ ପଡ଼ି ରହିଲା—ଗୋଡ଼ ହାତ ଆଉ ଠେକ ହେଲା ନାହିଁ । କଣ କରିବ ? ସେହିଦିନରୁ ସେ ଧାନକୁଟା ଛାଡ଼ିଦେଲା ।

କିନ୍ତୁ ବସି ଖାଇଲେ ନଈବାଲି ସରେ । ଯାହା କିଛି ଟଙ୍କା ପଇସା ହାତରେ ଥିଲା, ତାହା ଚିହ୍ନୂର ବୃହ୍ନୂର ହୋଇଗଲା । ଶେଷକୁ ଦୁଇଟା ମାତ୍ର ଟଙ୍କା ଅବଶିଷ୍ଟ ଥିଲା; ତାହା ବି ଚୋରି ହୋଇଗଲା । ମେଙ୍କୀ ଘରେ ନ ଥିବା ସମୟରେ ଠାଉରିଆଟାଏ ପଶି ସେତକ ମାରି ନେଇଗଲା । ମେଙ୍କୀକୁ ଧାଗ୍‌ବାଦିଗ ଶୂନ୍ୟ ଦେଖାଗଲା, କିନ୍ତୁ କଣ କରିବ ? ଖାଲି ଦୁଇଟି ଆଖିରୁ ବହେ ଲୁହ ଗଡ଼ାଇ ସେ କପାଳକୁ ଅଦରି ଭଙ୍ଗା କୁଡ଼ିଆରେ ପଡ଼ି ରହିଲା । ଏହିପରି ଦିନ ପରେ ଦିନ କଟିବାକୁ ଲାଗିଲା । ଅଭାବଗ୍ରସ୍ତ ଅରକ୍ଷ ଲୋକର ଯେଉଁ ଦଶା ହୁଏ, ମେଙ୍କୀର ତାହା ହିଁ ହେଲା ।

—୪—

"ମା ସାଆନ୍ତାଣୀ ! ମୁଁ ଯାହା କହୁଥିଲି ସେଇଆ ! ଏ ସବୁ ଦଶାର ଫେର—ଖାଲି ଦଶାର ଫେର । ସ୍ୱାନକପାଳୀ ମାନ ମାର ଚୁଷି ଯାଇଥିଲା—ଏବେ କେଞ୍ଚେ ପାଇଛି । ଯାହାର ଦାନା ଖାଇଲୁ ତାକୁ ନାନ୍ଦବୁ ? ଏଥିରେ ଧରମଦେବତା ସହିବ କେତେବେ ? ବେଶ୍ ହୋଇଛି, ଆଚ୍ଛା ହୋଇଛି । ସେଇମିତି ଲୋକଙ୍କୁ ସେଇଆ ଯାଜେ ?

ଡାହାଣୀ ଲଗିଲା ପରି ବୈକୁଣ୍ଠିଆ ମା ଏହିପରି ଗୁଡ଼ାଏ ଗଜର ଗଜର ହେଲା । ତା ଶୁଣି ରାଧିକାଦେବୀ ପଚାରିଲେ— "କଣ ଲୋ ବୈକୁଣ୍ଠିଆ ମା, କାହା କଥା କହୁଛୁ ?"

ବୈକୁଣ୍ଠିଆ ମା କହିଲା—"ଆଉ କାହା କଥା ସାଆନ୍ତାଣୀଏ । ସେହି ମାନବାଲି ମେଙ୍କୀ କଥା କହୁଛି । ଏଥର ତ ମଗଜ ମରିଗଲା । ମୁଁ ତାଜବ୍ ହେଉଚି ଲୋ ମା ! ଗୋଟାଏ ଗୋଟାଏ ମାଇକିନାଙ୍କର କେତେ ଫୁଲାଣି ! ଯା କହନ୍ତି—ଫୁଲପଣକୁ, ଫୁଲେଇ ହେଉଛି ଚୁଲି ମୁହଁକୁ । ମଣିଷ ଗୋଟାଏ ଗୋଟାଏ ଉଡୁରନ୍ତି ମା ସାଆନ୍ତାଣୀ, ଉଡୁରନ୍ତି ! ମରିବାପାଇଁ ସିନା—!"

ରାଧିକା ଦେବୀ ବାଧା ଦେଇ କହିଲେ, "କେତେ ବକର ବକର ହଉ ଲୋ ବୈକୁଣ୍ଠିଆ ମା ! ମେଙ୍କୀର କଣ ହେଲା ? ତୁ ତାକୁ ଦେଖିଲୁ କେଉଁଠି ?"

ବୈକୁଣ୍ଠିଆ ମା କହିଲା—"ସେ ଦିନ ପରା ହଳଧରପୁର ଗାଁକୁ ଯାଇଥିଲି, ମା ସାଆନ୍ତାଣୀ ! ତମକୁ କହି ଯାଇଥିଲି ନାହିଁ ନା ?

ବୈକୁଣ୍ଠିଆ ଅଛି ସେଠେଇଁ ତା ମାମୁଁ ଘରେ ଅଛୁ ନା ମା— ମନଟା ଖାଲି ଗୁଡ଼େଇପୁଡ଼େଇ ହୁଏ । ପିଲାଟା କମିତିକା ଅଛୁ, ମାସେକେ ଦୁ ମାସକେ ଥରେ ଦେଖି ନ ଆସିଲେ ଆତ୍ମା ବୁଝେ ନାହିଁ । ସେତେ-ହେଲେ ଏକା ନାତି ତ ମା ! ହଁ, କଣ କହୁଥିଲି ? ମେଙ୍କୀ କଥା ! ସେଇଟା ସେଇ ଗାଁରେ ରହୁଛି । ଚକ୍ଷୁ ବୋଲି ଏତେ ଖଣ୍ଡେ କରୁଛି, ସେଥିରେ ଶିଆଳ କୁକୁର ବ ରହିବେ ନାହିଁ । ଆଜିକାଲି ଆଉ ଆଗ ମେଙ୍କୀ ନାହିଁ ଯେ ସାଆନ୍ତାଣୀ ! ଦେଖିଲେ ଚିହ୍ନି ପାରିବ ନାହିଁ, ଇମିତି ହୋଇଗଲାଣି । ଦେହରୁ ଖାଲି ଯିମିତି କଳାପାଣି ନିଗିଡ଼ି ପଡ଼ୁଛି । ମଳି କଠ୍‌କଠ୍‌ ଖଣ୍ଡେ ଛିଣ୍ଡାଲୁଗା ପିନ୍ଧୁଛି । ଦୁଆର ଦୁଆର ବୁଲି ଭିକ ମାଗୁଛି । ମୋତେ ଦେଖି ଟକ୍ କରି ମୁହଁ ବୁଲେଇଦେଇ ଚାଲିଗଲା । କାହିଁକି କୁହ ନ ? ସରମ ଲାଗିଲା । ମୁଁ ବ କାହିଁକି ଭିକାରୁଣୀଟାକୁ କଣ କହିବାକୁ ଯିବ ?”

ରାଧିକାଦେବୀ ଚମକିପଡ଼ି କହିଲେ—“କଣ ? ମେଙ୍କୀ ଭିକ ମାଗୁଛି ?”

ବୈକୁଣ୍ଠିଆ ମା ଉତ୍ତର ଦେଲା—“ଭିକାରୁଣୀଟା, ଆଉ ଭିକ ନ ମାଗି କଣ କରିବ ? କେଉଁ ଜମିଦାରୀ ମୌରସୀଟା ଅଛି ଯେ ବସି ବସି ଖାଇବ । ହାୟ, ହାୟ ! ବେଳେବେଳେ ଲୋକଙ୍କୁ କି କୁବୁଦ୍ଧି ଦେଖାଯାଏ କୁହ ନ ମା ? ମା ସାଆନ୍ତାଣୀ ତୋତେ କଣ କରି ନ ଥିଲେ ? ଯା କହନ୍ତୁ, ହାତ ସତଗରେ ନେଇ ତୋତେ ବସାଇଥିଲେ । ଏବେ ସେ ପର ଲୋକଙ୍କ ଘରୁ ଗୋଡ଼ କାଢ଼ି ଚାଲିଗଲା । ମୁଁ ତାଜବ୍ ହେଉଛି ଲୋ ମା ! ମଣିଷ ପୁଣି ଇମିତି ଉତ୍ପାତ ହୁଅନ୍ତି !”

ରାଧିକାଦେବୀଙ୍କ ଆଖି ଛଳ ଛଳ ହୋଇ ଆସିଲା । ସେ ଆଉ ସମ୍ଭାଳି ପାରିଲେ ନାହିଁ । ବସିଲା ସ୍ଥାନରୁ ଧଡ଼ କରି ଉଠି ଚାଲିଗଲେ ।

× × ×

ସେତେବେଳେ ଗଜାନନବାବୁ ଚଉକି ମାଡ଼ି ଦେଇ ଚା ପାନ କରୁଥାଆନ୍ତି । ପ୍ରଥମେ ଆ—ଫୁ କରି ତା ପରେ ଚା ପାତ୍ରରେ ଚୁମ୍ବନ ଦେଉଥାନ୍ତି । ଗରମ ଚା'ରେ ହାଲ-ଦରିଆ ଥଣ୍ଡା ହୋଇ ଯାଉଥାଏ । ଏହିପରି ସମୟରେ ରାଧିକାଦେବୀ ସମ୍ମୁଖରେ ବିଷଣ୍ଣ ବଦନରେ ଆବିର୍ଭୂତା ହୋଇଯାଇ କହିଲେ—"ହଇ ହୋ ! ତୁରନ୍ତ ଗୋଟାଏ ଗୋରୁଗାଡ଼ି ସଜଳ କରିଦେଇ ପାରିବ ?"

ଗଜାନନବାବୁ ଏହା ଶୁଣି କିଛିକ୍ଷଣ ଅବାକ ହୋଇ ରହି ପରେ ପଚାରିଲେ, "କି, ରାଧିକା ବୃନ୍ଦାବନ ଯିବେ କି ?"

ରାଧିକାଙ୍କ ବିଷଣ୍ଣ ବଦନରେ ଟିକିଏ ହାସ୍ୟରେଖା ଫୁଟିଉଠିଲା । ସେ କହିଲେ—"ଯା ମଲା ! ତମର ସବୁବେଳେ ସେହି ଗାଳୀଟାପରା !" ମୁଁ ପଚାରୁଛି—"ଏହିକ୍ଷଣି ଗୋଟାଏ ଗୋରୁଗାଡ଼ି ସଜଳ କରିଦେଇ ପାରିବ କି ନା ?"

ଗଜାନନବାବୁ ଉତ୍ତର ଦେଲେ—"ମଙ୍ଗଳବଟା କଣ ନ ଜାଣି ଗୋରୁଗାଡ଼ିଟାଏ ସଜଳ କରିବାକୁ ଯିବା ବୋକାମି ନୁହେଁ କି ?"

ରାଧିକାଦେବୀ କହିଲେ —"ନା, ନା, ଘର ଦରକାର ଅଛି, ମୁଁ ଟିକିଏ ହଳଧରପୁର ଯିବି ।"

ଗଜାନନ ପଗ୍ଚରିଲେ—"କ ? ସେ ଗାଁରେ ହଳ ଚାଷିବ କି ?"

ରାଧିକାଦେବୀ ହକ୍ ହୋଇ କହିଲେ—"କ ମଣିଷଟାଏ ମ ତମେ ! ମୁଁ କହୁଛି—ମୋର ଜରୁରୀ କାମ ଅଛି । ଗୋଟାଏ ବଳଦ-ଗାଡ଼ି ସଜାଇ କରିଦିଅ । ମୁଁ ଫେରିଆସିଲେ ସବୁ କଥା କହିବି ।"

ଗଜାନନ ଅଡ଼ି ବସିଲେ—"ନା, ଆଗେ କହିବା ଦରକାର ।"

ରାଧିକାଦେବୀ ନାଗ୍ଚର ହୋଇ ହଳଧରପୁର ଯିବାର ଉଦ୍ଦେଶ୍ୟ ବ୍ୟକ୍ତ କଲେ । ବୈକୁଣ୍ଠିଆ ମାଠାରୁ ସେ ଦେମଙ୍କୀର ଦୁରବସ୍ଥା କଥା ଯାହା ଯାହା ଶୁଣିଥିଲେ, ତାହା ସମସ୍ତ ପ୍ରକାଶ କରି କହିଲେ—"ମୁଁ ଭାବୁଛି, ତାକୁ ଯାଇ ଆଜ ନେଇଆସିବି । ଲୋକଟା ବଡ଼ ହୀନସ୍ଥା ହେଲାଣି । ତେର ଦିନର ପୁରୁଣା ଗୃହକାରିଣୀ; ସେ ଆଜ ଭିକ ମାଗି ମାଗି ବୁଲିବ, ଯା ମୁଁ ସହିପାରିବି ନାହିଁ । ମୁଁ ଯାଉଛି, ତାକୁ ବୁଝେଇ ଶୁଝେଇ ନେଇଆସିବି । ସାଙ୍ଗରେ ବୈକୁଣ୍ଠିଆ ମା ଯିବ । କିଛି ଅସୁବିଧା ହବ ନାହିଁ । ତମେ ଏଥିରେ ବାଧା ଦିଅ ନାହିଁ । ମୋ ରାଣ, ମୋ ମୁଣ୍ଡ ଖାଇବ ।"

ଏହା କହି ରାଧିକାଦେବୀ ସ୍ୱାମୀଙ୍କ ହାତ ଧରି, ଚିବୁକ ଧରି ବହୁତ ଆଦର କଲେ । ଗଜାନନଙ୍କର ଭିତରେ ଭିତରେ ଗୋଟାଏ ପ୍ରବଳ ହାସ୍ୟପ୍ରବାହ ଉଚ୍ଛ୍ୱସିତ ହୋଇଉଠିଲା । କିନ୍ତୁ ସେ ମନେ ମନେ କହିଲେ—"ହୁଁ" । ଏଇଥର ରାଧିକା ଠାକୁରାଣୀ ଠିକ୍ ଧରା-ପଡ଼ିଯିବେ । କରେ ବାପା ! ସେତେବେଳେ କାଡ଼ି ଦେଉଥିଲ

କାହିଁକି ? ଏତେବେଳେ କାନ୍ଦବୋବାଳି ପଡ଼ୁଛି କାହିଁକି ?” କିନ୍ତୁ ଗଜାନନ ବାହାରକୁ ଏ ଖବର ପ୍ରକାଶ ନ କରି କହିଲେ—“ଆଚ୍ଛା, ଏଇ କଥା ତ ! ମୁଁ ଖବର ଦେଇ କାଲି ନେଇଆସିବି । ସେଥିପାଇଁ ଏତେ ତରବର କାହିଁକି ? ତମର ବା ଯିବା କି ଦରକାର ?”

ରାଧିକାଦେବୀ ଅଡ଼ି ବସିଲେ—“ନା, ମୋତେ ଯିବାକୁ ହେବ । ସେ ଆଉ କାହା କଥାରେ ଆସିବା ଲୋକ ନୁହେଁ—ମୁଁ ବେଶ୍ ଜାଣେ ।”

ଯାହାହେଉ, ଗଜାନନ ସ୍ତ୍ରୀ-ରାଧିକାଙ୍କର ପ୍ରବଳ ଅନୁରୋଧ ଏଡ଼ି ପାରିଲେ ନାହିଁ । ଅବଶେଷରେ ଗାଡ଼ି ଆସିଲା । ରାଧିକାଦେବୀ ବୈକୁଣ୍ଠିଆ ମାଆକୁ ସାଙ୍ଗରେ ନେଇ ଚାଲିଲେ ।

× × ×

ଆଜକୁ ପନ୍ଦର ଦିନ ହେଲା ମେଙ୍କୀ ଫେରିଆସିଛି । ଆଉ ରାଧିକାଦେବୀଙ୍କର ପାନଖିଆ ଅଭ୍ୟାସଟା ମଧ୍ୟ ଫେରିଆସିଛି । ପୁଣି ପୁରାତନ ପାନବଟା ଓ ପିକଦାନୀଟା ବାହାରିଛି । ପୁନଶ୍ଚ କଚର୍ କଚର୍ ହୋଇ ରାଧିକାଦେବୀଙ୍କ ପାଟିରୁ ପାନପିକ ପଡ଼ିବା ମଧ୍ୟ ଆରମ୍ଭ ହୋଇଛି । ଏକ କଥାରେ କହିବାକୁ ଗଲେ—ଯଥା ପୂର୍ବଂ ତଥା ପରମ୍—ଅବସ୍ଥାଟା ଆଜି ରାଧିକାଦେବୀଙ୍କ ଘରେ ବିରାଜମାନ ।

—°✻°—

# ସ୍ନେହବନ୍ଧନ

ଶ୍ରୀ କାଳିପ୍ରସନ୍ନ କବି

—୧—

ଯାହାପାଇଁ ଆଜ ବିଦ୍ୟାସାଗର କଲେଜରେ ବିପୁଳ ଆନନ୍ଦ-ଉତ୍ସବ, ସମାରୋହ — ଯାର କୃତିତ୍ୱରେ କଲେଜର ମୁଖ ଉଜ୍ଜ୍ୱଳ, ଉଦ୍ଭାସିତ — ଯାହାକୁ ଅଭିନନ୍ଦିତ, ଉତ୍ସାହିତ କରିବା ପାଇଁ ନିଜେ ଭାଇସ୍ ଚାନ୍ସେଲର ସଭାପତିର ଆସନ ଅଳଙ୍କୃତ କରିଅଛନ୍ତି— ଶତ ଶତ ଜିଜ୍ଞାସୁ ଆଖି ଯାହାକୁ ଦେଖିବା ପାଇଁ, ଚିହ୍ନିବା ପାଇଁ ବ୍ୟଗ୍ର—ସଭାପତିଙ୍କ ଆହ୍ୱାନରେ ସ୍ୱର୍ଣ୍ଣପଦକ ଗ୍ରହଣ କରିବା ପାଇଁ ସେହି ବିନୋଦ କୁମାର ମଣ୍ଡପ ତଳେ ଆସି ଠିଆହେବା ମାତ୍ରକେ ଗୋଟାଏ ବିରାଟ ବିସ୍ମୟ-ସ୍ରୋତ ବହିଗଲା ଗୃହଅଭ୍ୟନ୍ତରେ । ଏହି କ୍ଷୀଣକାୟ କିଶୋର ବାଳକ ସମଗ୍ର ବିଶ୍ୱବିଦ୍ୟାଳୟର ବିସ୍ମୟ ଉତ୍ପାଦନ କରିଛି I.Sc. ପରୀକ୍ଷାରେ । କୌଣସିଠାରେ ଆଜଯାଏ କେହି କେବେ ଏତେ ବେଶି ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇପାରି ନାହାନ୍ତି, ପାରିବେ କି ନା ଭବିଷ୍ୟତ ଗର୍ଭରେ, ସନ୍ଦେହ କୋଳରେ ଲୀନ ତାହା— ।

ପରିଧାନରେ ତାର ଖଣ୍ଡିଏ ପରିଷ୍କାର-ପରିଚ୍ଛନ୍ନ ଖଦଡ଼ ଧୋତି—ଦେହରେ ରହିଛି ମୋଟା ଜୀର୍ଣ୍ଣଶୀର୍ଣ୍ଣ ଶୁଭ୍ର ପଞ୍ଜାବୀଟିଏ । ଅଙ୍ଗ ସଞ୍ଚାଳନ ସଙ୍ଗେ ସଙ୍ଗେ ପଞ୍ଜାବୀର ଫାଙ୍କ ଦେଇ ବିଜୁଳି

ମାଇଲ ପରି ବେଳେବେଳେ ଝଲକ ଉଠୁଛି ତାର ତପ୍ତକାଞ୍ଚନ ଦେହକାନ୍ତି । ଭ୍ରମରକଳା କୁଞ୍ଚିତ କେଶପାଶ ଅଟିନ୍ୟସ୍ତ— ପଟଳଚିରା ଆଖି ଦୁଇଟିରେ ବୁଦ୍ଧିମତ୍ତାର ଜ୍ୱଳନ୍ତ ଛବି—ଶିଶୁସୁଲଭ ସରଳ-ସାହସ ମୁଖଶ୍ରୀ ।

ବିନୋଦକୁ ମଣ୍ଡପ ତଳେ ଛିଡ଼ା ହେବାର ଦେଖି ତାହାର ନିକଟତମ ବନ୍ଧୁ କେତେଜଣ ବିରକ୍ତ ହୋଇ ଉଠିଲେ । ହିମାଂଶୁ ତ ତୁନି ହୋଇ ରହି ନ ପାରି କହିଲ, "ବିନୋଦଟା କମିତି ମଣିଷ ଗୋଟାଏ ? ହଇ ରେ ବାବୁ, ତୋର ଯଦି ନାହିଁ— ନ ଥିଲେ କଣ ହେଲ, ବନ୍ଧୁବାନ୍ଧବ କାହାରିଠାରୁ ଖଣ୍ଡିଏ କାମିଜ କି ପଞ୍ଜାବୀ ମାଗି ଆଣିଥିଲେ କଣ ମହାଭାରତ ଅଶୁଦ୍ଧ ହୁଅନ୍ତା ?"

ବିହାରୀ କହିଲ, "ପାଗଳ ହେଲୁ ହିମାଂଶୁ ! ମାଗିବ ବିନୋଦ କୁମାର ? ସେ ଦିନର କଥା ଶୁଣି ନାହୁଁ ? "ଯୁଗବାଣୀର" ସମ୍ପାଦକ ତ ମୋର ବିଶେଷ ପରିଚିତ । ସେ ମୋ ପାଖକୁ ଖଣ୍ଡିଏ ଚିଠିଲେଖି ଫଟୋଗ୍ରାଫରକୁ ପଠାଇଦେଲେ ବିନୋଦର ଗୋଟାଏ ଫଟୋ ନେବାପାଇଁ । ମୁଁ ତତ୍‌କ୍ଷଣାତ୍ ତାଙ୍କୁ ସଙ୍ଗରେ ନେଇ ବିନୋଦ ପାଖକୁ ଯାଇ ଦେଖେ, ବାବୁଙ୍କର ସେତେବେଳେ ଅରିଟ ସେବା ଲଗିଛି । ଫଟୋଗ୍ରାଫର ଆସିଛି ଶୁଣି ନାକଟା ମୁଣ୍ଡକୁ ଟେକି କହିଲ, "ପ୍ରିନ୍‌ସିପାଲ ମଧ୍ୟ ଏମାନଙ୍କ ସଙ୍ଗରେ ଯୋଗ ଦେଉଛନ୍ତି ? ମୁଁ ଯେ ଏତେ ମନାକଲି, ମୋର ଏ ସବୁରେ ଲଭ କଣ ! ଜମା ଶୁଣିଲେ ନାହିଁ । ବାସ୍ତବିକ ଭାଇ, ତାଙ୍କ ହୁକୁମ ତାମିଲ କରିବାକୁ ଯାଉଛି ଠିକ୍ ହରିକାଠକୁ ବଳି ଗଲ ପରି । କହିଲି, "ଆଛା ଆଛା, ତାହା ହିଁ ହେଉ, ତୁ ଚଞ୍ଚଳ ଉଠ, ପୋଷାକ-ପତ୍ର ପିନ୍ଧି ନେ ।" ଠୋ ଠୋ ହସିଉଠି ସେ କହିଲ, "ପୋଷାକ-ପତ୍ର !" କହିଲି, 'ହଁ'

ହିଁ; ଖଣ୍ଡିଏ କଳାକୋଟ, ଅଛି ନା ଅଣାଇବ ?'' ''କୋଟ ଅବଶ୍ୟ ମୋର ନାହିଁ—ଅଣାଇବାର ପ୍ରୟୋଜନ ମଧ୍ୟ ନାହିଁ ।'' ଅବାକ୍ ହୋଇ ପଚାରିଲି—''କଅଁ ! ତୁ କଣ ଇମିତି ବେଶରେ ଫଟୋ ଦେବୁ ।'' ଅମ୍ଳାନ ବଦନରେ କହିଲା, 'ନିଶ୍ଚୟ' । "ପାଗଳ ! ରହ, ମୁଁ କୋଟ, କାମିଜ ସବୁ ନେଇ ଆସୁଛି"—କହି ଦୁଇ ପାଦ ଯାଉ ଯାଉ ଚଟକନା ଧାଇଁଆସି ମୋର ହାତ ଧରି ପକାଇ ସେ କହିଲା,—"ବିହାରି ! ଦେଖ, ତୁମ୍ଭେମାନେ ହିଁ ମୋର ବନ୍ଧୁ, ସମ୍ବଳ, ସର୍ବାର୍ଥ । ମୁଁ ମାଗୁଛି, ଭାଇ ମୋ ଉପରେ ଆଉ ଯେ ଯାହା ଅତ୍ୟାଚାର କରୁଛି କରୁ, କିନ୍ତୁ ତୁମ୍ଭେମାନେ କିଛି କରନାହିଁ । ମନେକରିବ ନାହିଁ, ତମମାନଙ୍କଠାରୁ ମାଗିବାକୁ ମୋର ବିନ୍ଦୁମାତ୍ର ଲଜ୍ଜା ଅଛି, କିନ୍ତୁ କଅଁ ? ମୁଁ ତ ଜ୍ଞାନହେଲା ଦିନଠାରୁ କେବେ-ହେଲେ ଭଲ କୋଟଟିଏ କି କାମିଜଟିଏ ଘୋଡ଼ାଇ ହୋଇନାହିଁ । ସ୍କୁଲରେ ଥିଲାବେଳେ ବରାବର ଖଣ୍ଡିଏ ଗୁଦରରେ ମୋଟ ଦିନ କଟିଛି । ହଇ ରେ ବିହାରି ! ଯାହାର ମା ଟୋପାଏ ଔଷଧ ଅଭାବରେ ଅସହାୟ ପଶୁପରି ପ୍ରାଣ ଦେଇଛି, ଯେ ଆଜୀବନ ମୁଠାଏ ଅନ୍ନର କାଙ୍ଗାଳ, ତାର ଏସବୁ ବିଳାସ-ବ୍ୟସନରେ ପ୍ରୟୋଜନ କ'ଣ ଭାଇ ? ମୁଁ ତ କାହାକୁ ଦେଖାଇବା ପାଇଁ ଫଟୋ ଦେଉନାହିଁ ଯେ ସଜବାଜ ହୋଇ ଫଟୋ ନେବ ! ମୋର ଫଟୋରେ ଯାହାର ଲୋଡ଼ା—ନିଅନ୍ତୁ ସେ ମୋର ଘାନତାର ଦୈନନ୍ଦିନ ଛବି । ଦିନକ ପାଇଁ ବୃଥା ସଜବାଜ କଅଁ ? ମୁଁ ମୋର ସମ୍ବଳ ଖଦଡ଼ ଧୋତି ଖଣ୍ଡିକ ପିନ୍ଧି ଫଟୋ ଦେବି···ନଭୁବା ନମସ୍କାର ।" ଜାଣେ ମୁଁ ପାଗଳଟାକୁ; ଥରେ ଯାହା ନାହିଁ କରି ବସିବ, ପ୍ରାଣ ଗଲେ ଆଉ କରିବ ଭାବିଛ ! ବାଧ୍ୟହୋଇ ଫଟୋଗ୍ରାଫର ସେମିତି ଫଟୋ ନେଲା, ପତ୍ରିକାଗୁଡ଼ାକରେ ଦେଖିଛ ତ ?

ହିମାଂଶୁ, "ନିଘଟ ପାଗଳଟାଏ", କହି ମୁହଁ ଫେରାଇ ନେଲା ।

ପଶୁପତି ଅତ୍ୟନ୍ତ ଗମ୍ଭୀର ହୋଇ କହିଲା, "ସେ ଆଦୌ ପାଗଳ ନୁହେଁ ଭାଇ, ବରଂ ଆଜିଯାଏ ଯେ ସେ ପାଗଳ ହୋଇନାହିଁ, ଏହା ହିଁ ଆଶ୍ଚର୍ଯ୍ୟ ! ଆମ ଘର ପାଖରୁ ୭ । ୮ କ୍ରୋଶ ଦୂରରେ ବିନୋଦର ଘର ଥିଲା । ବିନୋଦର ବାପ ଉଦୟଶଙ୍କର ଦାସ ଜମିଦାର ପ୍ରତାପ ପଟ୍ଟନାୟକଙ୍କର ଏକମାତ୍ର ଆଦରଣୀ କନ୍ୟାକୁ ବିବାହ କରି ଶ୍ୱଶୁରଘରେ ଥାଇ ସଂସ୍କୃତ ପଢ଼ୁଥିଲେ । ଯେଉଁ ବର୍ଷ ସେ କାବ୍ୟ ବିଶାରଦ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି, ଠିକ୍ ସେହି ବର୍ଷ ଆମ୍ଭ ଅଞ୍ଚଳକୁ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ କେତେଜଣ ସ୍ତ୍ରୀ-ପୁରୁଷ ଯାଇ ସ୍ଥାନେ ସ୍ଥାନେ ସଭାସମିତି କରି ଅନେକଙ୍କୁ ନିଜ ମତକୁ ଟାଣି ଆଣୁଥିଲେ । ବିନୋଦର ମା' ଦିନେ ତାଙ୍କ ଭାଇ ସଙ୍ଗରେ ଯିବା ପାଇଁ ପ୍ରସ୍ତୁତ ହେଉଥାନ୍ତି, ଉଦୟଶଙ୍କର ଜାଣିପାରି ତାଙ୍କୁ ନିଷେଧ କଲେ । ଗୋଟିଏ ଧର୍ମରେ ପୂର୍ଣ୍ଣମାତ୍ରାରେ ବିଶ୍ୱାସ ସ୍ଥାପିତ ହେବା ପୂର୍ବେ ଅନ୍ୟ ଧର୍ମର ତତ୍ତ୍ୱକଥା ଶୁଣିବା ଉଚିତ ନୁହେଁ, ତହିଁରେ ସନ୍ଦେହର ଛାୟା ଆସି ପଡ଼େ; କର୍ତ୍ତବ୍ୟର ପଥ ଭୁଲାଇଦିଏ । ବିନୋଦର ମାତା ତାଙ୍କ କଥା ତ ଶୁଣିଲେ ନାହିଁ, ଅଧିକନ୍ତୁ ବିନୋଦର ମାମୁଁ ଆସି ବେଶ୍ କଡ଼ା କଡ଼ା ଦୁଇ ଚାରି କଥା ଶୁଣାଇଦେଲେ, 'ଯାହାପାଇଁ ଏମ ଖୋସାମଦ, ସେ ଆମ ହାତରେ' କହି ବିନୋଦକୁ ଦେଖାଇ ଦେଇ ତାକୁ ଗୃହକୁ ନେଇଗଲେ ସେ । ସଭାକୁ ଯିବାର ବନ୍ଦ ହେଲା ନାହିଁ । ପରଦିନ ଜନ୍ତୁ ଉଦୟଶଙ୍କରଙ୍କ ପତ୍ନୀ ଆଉ କେହି ପାଇଲେ ନାହିଁ । ବିନୋଦ ସେତେବେଳେ ୨୪ବର୍ଷର ପିଲା । ପିଲାଦିନେ ଘିଅ ଖାଇ ଦୁଧରେ

ହାତ ଧୋଇଛନ୍ତି ସେ । ସେ ସୁଖ କିନ୍ତୁ ତା କପାଳରେ ବେଶିଦିନ ରହିଲା ନାହିଁ । ହୁଏ ତ, ହୁଏ ତ ଉଦୟଶଙ୍କରର ଦୀର୍ଘଶ୍ୱାସରେ ହିଁ ପ୍ରଭାସ ପଟ୍ଟନାୟକ ସର୍ବସ୍ୱାନ୍ତ ହେଲେ । ଦେଶରେ ଭୀଷଣ ମଡ଼କ ଆସି ଦେଖାଦେଲା । ତା କବଳରେ ପଡ଼ି ପଟ୍ଟନାୟକଙ୍କର ବଂଶପାତ ନିପାତ ହେଲେ—ରହିଲେ କେବଳ ବିନୋଦ ଆଉ ତାର ମା । ଏଥିରେ ମଧ୍ୟ କଣ ତାର ଦୁର୍ଗତିର ସମାପ୍ତି ଘଟିଲା ? ପ୍ରଭାସ ପଟ୍ଟନାୟକଙ୍କର କକେଇ ପୁଅ ମିଥ୍ୟା ମାଲିମୋକଦ୍ଦମା କରି ସମସ୍ତ ଜମିଦାରୀଟା ଆତ୍ମସାତ୍ କଲେ—ଦୟାକରି ଅବଶ୍ୟ ବିନୋଦକୁ ରହିବା ପାଇଁ ଦେଲେ ଖଣ୍ଡିଏ କୁଡ଼ିଆଘର । ପ୍ରଭାସ ପଟ୍ଟନାୟକଙ୍କ ଝିଅ ସେ—କଣ ଏ ଅପମାନ ସହିବା ପାଇଁ ଗାଁରେ ବସିରହିବେ ? ଜାଣନ୍ତି ଆଜ ବସି କାଲି ପରଘରେ କାମ ନ କଲେ ପିଲାଟିକି ବଞ୍ଚାଇ ପାରିବେ ନାହିଁ ସେ । ଯେଉଁଠାରେ ଦିନେ ତାଙ୍କ ପ୍ରଭାବ-ପ୍ରତିପତ୍ତିର ସୀମା ନ ଥିଲା, ସେହିଠାରେ ସେ ଦାସୀବୃତ୍ତି କରି ପେଟପୋଷିବେ କମିତି ? ବାଧ୍ୟ ହୋଇ ଶିଶୁ ବିନୋଦକୁ ସଙ୍ଗରେ ନେଇ ଗୋପନରେ ଝାଡ଼ଗ୍ରାମ ଚାଲିଗଲେ—ଦୂରସମ୍ପର୍କୀୟ ନିଃସନ୍ତାନ ମାଉସୀଘରକୁ । ଅରଟ ଘୂରାଇ, କାର୍ପେଟ ବୁଣି, ବାକି ନିତି ସେ ଯାହା ରୋଜଗାର କରନ୍ତି, ସେଥିରେ ହିଁ କୌଣସି ମତେ ଦିନାତିପାତ ହୁଏ । ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା—ବିନୋଦକୁ ମଣିଷ କରିବା । ସେ ଚେଷ୍ଟା ତାଙ୍କ ସାଫଲ୍ୟର ପଥରେ ନିତି ନିତି ଧାଇଁ ଚାଲିଛି । ବିନୁର ଯେଉଁଦିନ ମେଟ୍ରିକ ପରୀକ୍ଷାରେ ବୃତ୍ତି ପାଇ ଥିବାର ଖବର ପାଇଲା, ଠିକ୍ ସେହିଦିନ ହିଁ ତାର ମା' ଛାଡ଼ିଗଲେ ତାକୁ ଜନ୍ମକ ପାଇଁ । ଗଙ୍ଗାତଟରେ ମା'ର ଅନ୍ତ୍ୟେଷ୍ଟିକ୍ରିୟା କରିବାକୁ ଆସି ଏଠାରୁ ଆଉ ସେ ଫେରିଲା ନାହିଁ । ଫେରିବ ବା କାହିଁ ? କଣ ବା ଅଛି ସେଠି ତାର ?

ସଭା ଶେଷ ହେବା ମାତ୍ରେ ସହପାଠୀ ଦଳ ଆସି ଫଙ୍ଗପାଳ ପରି ବିନୋଦକୁ ଘେରି ପକାଇଲେ । ଅଜଣା ପିଲା ଦୁଇ ଚାରିଜଣ ଭୋଜ ପାଇଁ ଆବ୍‌ଦାର ଆରମ୍ଭ କଲେ । ନୀରବ ହାସ୍ୟରେ ନାଜର ଅପାରଗତା ଲୁଚାଇ ପଶୁପକ୍ଷ ହାତରେ ମେଡ଼େଲ ତିନୋଟି ଧରାଇ ଦେଇ ସଙ୍କୁଚିତ ବିନୋଦ କୌଣସି ମତେ ବ୍ୟୂହ ଭେଦ ବାହାରି ପଡ଼ିଲା—ସ୍ୱସ୍ତିର ନିଶ୍ୱାସମାରି ବଞ୍ଚିବା ପାଇଁ । ଲାଜରେ ମୁହଁ କାନ ତାର ବେଳେବେଳେ ଲାଲ ହୋଇ ଉଠୁଥାଏ । ଘରକୋଣରେ ଥରେ ଯାଇ ପଶି ପାରିଲେ ବଞ୍ଚିବ ସେ ! ଆସୁ ଆସୁ ଫାଟକ ପାଖରେ ଅଟକ ପଡ଼ିଗଲା । ପ୍ରିନ୍‌ସିପାଲ କାହାସଙ୍ଗରେ ଛିଡ଼ାହୋଇ କଥାଭାଷା କରୁଛନ୍ତି—ସେ ଫାଟକୁ ଛିଡ଼ା ରହିଛି ଗୋଟିଏ ବୃହତ୍ ମୋଟରକାର । ଗାଡ଼ିରେ ବସିରହିଛି ସୁନ୍ଦର ସୁସଜ୍ଜିତ ସୁକାନ୍ତ ପିଲାଟିଏ— ବାସ୍ତବିକ ତା ମୁହଁକୁ ଚାହିଁଲେ ଭଲପାଇବାକୁ ଆପେ ଆପେ ମନ ବଳେ । ବିନୋଦ ଯିବାର ପଥ ନ ପାଇ ଗାଡ଼ି ପାଖରେ ଛିଡ଼ାହେଲା । ସୁହାସ ଆଳାପ କରିବାର ଲୋଭ ସମ୍ଭାଳି ନ ପାରି ପଚାରିଲା, "ଆପଣ କେଉଁଆଡ଼େ ଯିବେ ?"

"ଛକୁ ଖାନସାମା ଲେନ୍ ।"

"ଛକୁ ଖାନସାମା ଲେନ୍ ?"

"ହଁ, ମୀର୍ଜାପୁର ଷ୍ଟ୍ରୀଟ ।"

"ଆପଣଙ୍କ ଘର ସେଇଠି ?"

"ନା, ମୋର ଘର ମେଦିନୀପୁର ଜିଲ୍ଲା—ରୋହିଣୀରେ ।"

"କେତେ ଦିନ ହେଲା ଏଠାରେ ଅଛନ୍ତି ?"

"ଦୁଇ ବର୍ଷ ।"

ଭୈଷଜରନ୍ ଆସିଯିବାରୁ ଦୁଇଟି ସରଳ ପ୍ରାଣର ଆଦାନ ପ୍ରଦାନ ବନ୍ଦ ହେଲା । ବାଟ ପାଇ ବିନୋଦ ମଧ ବାହାରି ପଡ଼ିଲା ।

—୨—

ପରଦିନ ବ୍ରାହ୍ମମୁହୂର୍ତ୍ତରେ ସଦ୍ୟସ୍ନାତ ବିନୋଦକୁମାର ଆଣ୍ଠୁ ପାଏ ଖଣ୍ଡିଏ ଖଦଡ଼ ଲୁଗା ପିନ୍ଧି ଦେହରେ ଖଣ୍ଡିଏ ଗାମୁଛା ପକାଇ ପଦ୍ମାସନରେ ବସି ଗୀତା ପାଠ କରୁଛି—

"ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ ।
ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଞ୍ଜୟ ?"

ଭୈଷଜରନ୍, ପୁତ୍ର ସୁଦାମଠାରୁ ବିନୋଦର ନାମଧାମ ଶୁଣି ସାରି ଚିତ୍ତ ଛଟପଟ ହେଉଛନ୍ତି । କିଏ ଏ ବିନୋଦ ? ରୋହିଣୀରେ ଘର—କିଏ ସିଏ ? ସତେ ଯଦି ସେ ହୁଏ । ନା, ନା, ଅସମ୍ଭବ ! ଜମିଦାର ପ୍ରଭାସ ପଟ୍ଟନାୟକଙ୍କର ଦୌହିତ୍ର ପୁଣି ଦୁଃଖୀ ବେଶରେ— ? ଅସମ୍ଭବ କଥା—କିନ୍ତୁ ଯଦି ? ନା, ନା, ତା କି କେବେ ସମ୍ଭବ ? ନୁହେଁ ।"

ବିନୋଦର ସ୍ୱର, ତାଳ, ଲୟସମନ୍ୱିତ ପାଠରେ ମୁଗ୍ଧ ହୋଇ ଭୈଷଜରନ୍ ରାସ୍ତା ଉପରେ ଛିଡ଼ା ହୋଇ ରହିଲେ । ଝରକାରେ ବିନୋଦର ମୁଖଶ୍ରୀ ଦେଖି ମନେପଡ଼ିଲା ତାଙ୍କର ଅତୀତ ଯୁଗରେ ଭରଦ୍ୱାଜ ତାପସ ଶିଶୁର ଗୁରୁଗୃହ ବାସକଥା ।

ପାଠ ସମାପନାନ୍ତେ ବିନୋଦ କୁମାର ଅରଟ ଧରି ବସିଲା । ସାତ ଦିନ କଲେଜ ବନ୍ଦ, ଏହି ଅବସରରେ ଯେତେବେଶି କାମ କରି ନେଇ ପାରିଥିବ ସେ, ସେତିକି ତାର ସୁବିଧା । ଅରଟରେ

ଘର୍ଘର-ଘର ଶବ୍ଦରେ ଭୈଷଜରତ୍ନ ପିଣ୍ଡା ତଳରେ ଛିଡ଼ା ହୋଇ ଡାକିଲେ, "ବିନୋଦବାବୁ ।"

ଅରଟ ଘୁରାଇବା ବନ୍ଦକରି ବିନୋଦ ବାହାରି ଆସି ଦେଖେ, —କାଲିକାର ସେହି ଭଦ୍ରଲୋକ—ଯେ ତାଙ୍କ ପ୍ରିନ୍‌ସିପାଲ ସାଙ୍ଗରେ କଣ କଥାଭାଷା କରୁଥିଲେ । ନମସ୍କାର କରି ବିନୋଦ କହିଲା, "ଆଦେଶ କରନ୍ତୁ ।"

"ଏହିଟି ତମ ବସା ନା ?"

"ଆଜ୍ଞା ହଁ ଉପରକୁ ଆସନ୍ତୁ," କହି ଘର ଭିତରକୁ ଯାଇ ଖଣ୍ଡିଏ ଛିଣ୍ଡା ଚଟାଇ ଆଣି ବିଛାଇଦେଲା ।

ଭୈଷଜରତ୍ନ ବସି ପଡ଼ି କହିଲେ, "କାଲି ତମ ପରୀକ୍ଷାର ଫଳ ଶୁଣି ବଡ଼ ପ୍ରୀତ ହେଲି । ତୁମେ କେଉଁ ସ୍କୁଲରୁ ମେଟ୍ରିକ୍ ପାସ୍ କରିଥିଲ ?"

"ଝାଡ଼ଗ୍ରାମ ।"

"ତମର ଘର କଣ ଝାଡ଼ଗ୍ରାମରେ ?"

"ଆଜ୍ଞା ନା—ପୂର୍ବେ ଆମ ଘର ଥିଲା ରେଭିଣୀରେ ।"

"ମେଦିନୀପୁର ଜିଲା ?"

"ଆଜ୍ଞା ହଁ ।"

"ଜମିଦାର ପ୍ରଭାସ ପଟ୍ଟନାୟକଙ୍କୁ ଜାଣ ?"

"ଜାଣେ, ସେ ଯେ ମୋର ମାତାମହ ।"

"ତମେ ଉଦୟଶଙ୍କରଙ୍କର ସନ୍ତାନ ?"

"ଆଜ୍ଞା ହଁ, ଆପଣ କି ତାଙ୍କୁ ଜାଣନ୍ତି ?"

"ଜାଣେ, କିନ୍ତୁ ତୁମେ ଏଠାରେ ଯେ—"

"ପଢ଼ିବା ପାଇଁ—"

"ତା ତ ବୁଝୁଛି, କିନ୍ତୁ—"

ଅଜା, ମାମୁଁ ସମସ୍ତେ ସେ ବର୍ଷ କଲେରାରେ ମରିଗଲେ; ତାଙ୍କ ଜମିଦାରୀ ଭାଇଆମାନେ ମାଲିମୋକଦ୍ଦମା କରି ଆତ୍ମସାତ କଲେ। ବାଧ୍ୟ ହୋଇ...।"

"ତମ ମାଆ—"

"ଦୁଇ ବର୍ଷ ହେଲା ଗତ ହେଲେଣି—"

ଭୈଷଜରତ୍ନ ଓଠ କାମୁଡ଼ି ନୀରବରେ ଦଣ୍ଡେ ବସିରହି କହିଲେ, "ମୁନ୍ଦେ ପାଣି ପାଇପାରେ ?"

"ନିଶ୍ଚୟ"—ବିନୋଦ ଗିଲାସେ ପାଣି ଥୋଇବା ମାତ୍ରେକେ ଭୈଷଜରତ୍ନ ଏକନିଶ୍ୱାସରେ ପିଇ ଦେଇ ପଚାରିଲେ, "ତୁମ ପଢ଼ା ଖର୍ଚ୍ଚ ଚଳାଏ କିଏ ବାବୁ ?"

"ବୃତ୍ତି ଆଉ ଅରଟ।"

"ଉଦୟଶଙ୍କର ବର୍ତ୍ତମାନ କଲିକତାରେ। ମୁ ଆଜି ତାଙ୍କୁ ତମ କଥା ସବୁ କହିଲି। ତୁମେ ତାଙ୍କ ପାଖରେ ରହି ପଢ଼ା ଶୁଣା-କର—ସୁବିଧା ହେବ, ବୁଝିଲ ?"

"ମାଫ୍ କରନ୍ତୁ—ମୁଁ ତ ଅପାରଗ ନୁହେଁ।"

"ବାବୁ, ଏଠା ତମର ଅଭିମାନର କଥା।"

"ନିର୍ଦ୍ଧନର ଅଭିମାନ କାହିଁ ? ମୁଁ ଅପାରଗ ହୋଇ ଆଜି ପାଞ୍ଚ ଦୁଆରରେ ହାତ ପାତିବା ବେଳେ ଭିକ୍ଷାର ଝୁଲି ନେଇ ତାଙ୍କ ପାଖରେ ହିଁ ଠିଆହେବି ସର୍ବପ୍ରଥମ, ମୋର ବିନୀତ ପ୍ରାର୍ଥନା, ସମ୍ପ୍ରତି ତାଙ୍କୁ କିଛି କହିବେ ନାହିଁ ।"

"ନା, କହିବି ନାହିଁ, କିନ୍ତୁ ବିନୋଦବାବୁ, ଉଦୟଶଙ୍କର ତାଙ୍କର ସ୍ତ୍ରୀଠାରେ ଅପରାଧୀ ହୁଅନ୍ତୁ ବା ନ ହୁଅନ୍ତୁ, ତମଠାରେ ତ ସେ ଦୋଷୀ ନୁହନ୍ତି ?"

"ଆଜ୍ଞା, ମୁଁ ତ ଦୋଷାଦୋଷର କଥା କିଛି କହୁ ନାହିଁ ?"

"ନ ହେଲେ ମଧ୍ୟ ଅଭିମାନ ଯେ ତମର ପ୍ରତି ଅଙ୍ଗରେ ଉଛୁଳି ପଡ଼ୁଛି । ଯଦି ସେ ଆସି ତମ ହାତଧରି କୋଳକୁ ଟାଣି ନେଇ କ୍ଷମା ଚାହାନ୍ତି ?"

"ତହିଁରେ ମୋର ଅକଲ୍ୟାଣ ଛଡ଼ା ଲାଭ ନାହିଁ ।"

"ତାଙ୍କର ପ୍ରଚୁର ଅର୍ଥସମ୍ଭାର—ଦଶ ଜଣ ବାହାରିଆ ଲୋକ ଖାଇପିଇ ଚାଲି ଯାଉଛନ୍ତି, ଆଉ ତୁମେ ମୁଠାଏ ଅନ୍ନପାଇଁ ଅରଟ ଧରି ବସିବ, ଏଟା କଣ ଗୋଟାଏ କଥାର କଥା ?"

"ମୋର ମନେହୁଏ, ଭାରତର ୧୧/୧୨ ଭାଗ ଲୋକଙ୍କର ଅବସ୍ଥା ଯେତେବେଳେ ମୋହରି ପରି, ସମସ୍ତଙ୍କର ଅରଟର ଆଶ୍ରୟ ନେବା ହିଁ ସମୀଚୀନ । ନିଜ ଗୋଡ଼ରେ ନିଜେ ଠିଆ ହେବା ସିନା ମନୁଷ୍ୟତ୍ୱ ?"

"ଅବଶ୍ୟ ଯଦି ମୁଣ୍ଡ ଉପରକୁ କେହି ନ ଥାନ୍ତି । ଅନର୍ଥକ ଶ୍ରମ ବାହୁଲ୍ୟ ମାତ୍ର, ଜାଣ ତ ?"

"କିନ୍ତୁ ଆଇ ମଧ୍ୟ ଯା'ର ନାହିଁ ?"

"ସେ ଅଲଗା କଥା, କିନ୍ତୁ ମୁଁ ତ ଉଦୟଶଙ୍କରଙ୍କୁ ଜାଣେ। ତମ ପରିଚୟ ପାଇଲେ ନିଶ୍ଚୟ ଧାଇଁ ଆସିବେ ସେ—"

"କିନ୍ତୁ ମା ମୋର ଗଣ୍ଡିଏ ଖାଇବା ଅଭାବରେ, ଟୋପାଏ ଔଷଧ ପାଇଁ ନା··· । ଥାଉ ସେ କଥା—ବୃଥାଟାରେ ତାଙ୍କୁ ବ୍ୟସ୍ତ-କରି ଲାଭ କଣ ? ଦିନ ତ ମୋର କଟିଯାଉଛି, ଭଲ ଭାବରେ ।"

"ଅଭିମାନ, ସେ ଯେ ତମ ପିତା···।"

"ଜନ୍ମଦାତା କହନ୍ତୁ ।"

"କେବଳ ତାହା ହିଁ କି ? କହି ଭୈଷଜରତ୍ନ ମାତାଲପରି ଟଳି ଟଳି ନିଜକୁ ସମ୍ଭାଳି ନ ପାରି ଯାଇ ଗାଡ଼ିରେ ବସିଲେ ।

— ୩ —

ଭୈଷଜରତ୍ନ ଉଦୟଶଙ୍କର ଦାସ ସହକାରୀଦ୍ୱୟଙ୍କୁ ଡକାଇ କହିଲେ, "ବିଭୂତି, ସନ୍ତୋଷ ! ତୁମେମାନେ ଯଦି ପାର "ସୁଧାସିନ୍ଧୁ ଔଷଧାଳୟ" ଚଳାଅ, ନଚେତ୍ ବନ୍ଦକର ସବୁକାମ। ମୁଁ ଆଜଠାରୁ ଅକ୍ଷମ, ଅପାରଗ । ମୋ ଦ୍ୱାରା ଜମା ଆଉ କିଛିକାମ ହେବ ନାହିଁ; ଜୀବନ୍ମୃତ ମୁଁ, ମୋର ଜୀବନ୍ତ ସମାଧିର ବେଳ ଆସିଛି ।"

ପତ୍ନୀ ନିରୁପମା ଦେବୀ ଦିନଯାକ ଭିତରକୁ ଡକାଇ ଡକାଇ ନିରାଶ ହୋଇ ବେଳ ରାତି ହେଲାବେଳେ ବାଧ୍ୟ ହୋଇ ବାହାର ଘରକୁ ଆସି ଚମକି ଉଠିଲେ । ଲକ୍ଷପତି ଭୈଷଜରତ୍ନ ଗୋଟିଏ ଛିଣ୍ଡା ଖଟ ଉପରେ ଅଣ୍ଟାଏ ମୋଟା ଖଦଡ଼ କନାପିନ୍ଧି

ପଡ଼ି ରହିଚନ୍ତି । ଅବିନ୍ୟସ୍ତ ରୁକ୍ଷ କେଶପାଶ, ଆଖି ଦୁଇଟି କାଚ ଉପରି ଲାଲ ଟକଟକିଆ । ଘରେ କୌଣସି ପଦାର୍ଥ କିଛି ନାହିଁ—ମୂଲ୍ୟବାନ ପଦାର୍ଥଗୁଡ଼ିକ ମଧ୍ୟ ଅନ୍ତର୍ହିତ । ଠିକ୍ ଗୋଟିଏ ଦୁର୍ଭିକ୍ଷର ଜୀବନ୍ତ ପ୍ରତୀକ ! ନିରୁପମା ଅନିର୍ଦ୍ଦିଷ୍ଟ ଆତଙ୍କରେ ଥରିଉଠି ଆର୍ଦ୍ର କଣ୍ଠରେ ଡାକିଲେ –

"ଭିତରକୁ ଆସନ୍ତୁ ।"

ଭୈଷଜରତ୍ନ ଗୁରୁଗମ୍ଭୀର ଦୀର୍ଘ ନିଶ୍ୱାସ ଛାଡ଼ି କହିଲେ, "ନିରୁ ! ମୁଁ ଅବିଶ୍ୱାସୀ, କୃତଘ୍ନ, ନର-ପିଶାଚ; ମୋର ନିଃଶ୍ୱାସରେ ବିଷ ରହିଛି, ପାଖକୁ ଆସ ନାହିଁ, ଜଳପୋଡ଼ି ମରିବି ନିରୁ, ମୁଁ କାଲି ମୋର ସମସ୍ତ ସମ୍ପତ୍ତି ତୁମରି ନାମରେ ଉଇଲ୍ କରିଦେବି । ସୁଦାମ ରହିଲା, ତାକୁ ଦେଖିବ, ମଣିଷ ଭଳିଆ ମଣିଷ କରିବ । ମୁଁ ନିଜକୁ ଆଉ ବିଶ୍ୱାସ କରିପାରୁ ନାହିଁ । ହୁଏ ତ – ନା ଥାଉ । ମୁଁ ଉଇଲ୍ କରିବି କାଲି– କାଲି ସକାଳେ ମୋର ସର୍ବସ୍ୱ ତୁମରି ନାମରେ ।"

"କଣ କହୁଚ ତୁମେ, ପାଗଳ ହେଲ ନା କଣ ?"

"ହାୟ୍ରେ ଦୁରାଶା ! ଯଦି ପାଗଳ ହୋଇପାରନ୍ତି !"

"କଣ ଏଡ଼େ ଗୁରୁତର ବେଦନା ତୁମର ?"

"ଶୁଣି ଲାଭ ନାହିଁ, ଅଭିଶପ୍ତ ଜୀବନ ମୋର, ନୃଶଂସ ମୁଁ ନିରୁ !"

"ତୁମ ଖବର ମୋତେ ତ ଅଛପା ନାହିଁ—ମା'କୁ ମୋର ବିନା ପଇସାରେ ଗରିବ ବୋଲି ଦୁଃଖୀବୋଲି ଚିକିତ୍ସା କରିବାକୁ ଯାଇ ନିଯୁକ୍ତ

ସଙ୍ଗରେ ପ୍ରାଣପ୍ରଣେ ଜୁଡ଼ି ଆଜୀବନ ଅଯୋଗ୍ୟାର ବୋଝ ବହିବହି ଚାଲିଛି, ଭିଖାରିଣୀକୁ ରାଜରାଣୀର ସୁଖରେ ରଖିଛ । ଆଜି ସେ ସବୁ ଅତୀତ ଇତିହାସ, କିନ୍ତୁ ଆଜ ସକାଳେ ହଠାତ୍ ତୁମକୁ ଖାନସାମା କେଉଁଠିକୁ ଯାଇଥିଲ କିଆଁ ? କିଏ ସେ ବାଳକ, ଯାହାକୁ ଦେଖି ଘାନତାକୁ ମୁଣ୍ଡେଇ ଦେବା ପାଇଁ ଏ ବ୍ୟାକୁଳ ଆବେଗ ତମର ?"

"ଡ୍ରାଇଭର କହିଛି ? ସୁଦାମ ଖବର ଦେଇଛି ? କିନ୍ତୁ··· କିନ୍ତୁ···କେତେ ଠିକିଏ ଜାଣନ୍ତି ସେମାନେ । ସତେ ନିରୁ, ଯାଇଥିଲି ମୁଁ, ଫେରିଛି—ନିରାଶ ହୋଇ, ବ୍ୟର୍ଥତାର ବିଷଜ୍ୱାଳା ବୁକୁରେ ବହି । ତାର ପରଶ ଯେ ମୋର ସୁଖସୌଭାଗ୍ୟର ମଝିରେ କେବେ ମିଳିବ ନାହିଁ ।"

"କିଏ ସେ ବାଳକ, ମୋତେ କହିବେ ନାହିଁ ?"

"କହିବି, କହିବି ନିରୁ—ତମଠାରେ ଗୋପନ କରି ପାପର ବୋଝ ଆଉ ବଢ଼ାଇବି ନାହିଁ; କିନ୍ତୁ ଶୁଣି ସହିପାରିବ ? କ୍ଷମା କରିପାରିବ ମୋର ବିଶ୍ୱାସଘାତକତା ? ସେ ଯେ ମୋର ପରି-ତ୍ୟକ୍ତ ଘାନଦୁଃଖୀ ନିରାଶ୍ରୟ ସନ୍ତାନ—ମୋହର ସନ୍ତାନ ।"—କହି ଭୈଷଜରତ୍ନ ଛୋଟ ପିଲାଟି ପରି ଭେ ଭେ କରି କାନ୍ଦି ଉଠିଲେ ।

ନିରୁପମା ଦେଈ ତାଙ୍କ ମୁଣ୍ଡ ତୋଳି କୋଳରେ ରଖି ବିଞ୍ଚି-ବାକୁ ଲାଗିଲେ । କିଛିକ୍ଷଣ ପରେ ଭୈଷଜରତ୍ନ କିଞ୍ଚିତ ଶାନ୍ତ ହୋଇ କହିଲେ —"ନିରୁ, ପିତୃମାତୃହୀନ ବାଳକ, ପିଉସୀ ଘରେ ମଣିଷ ହେଲି, ଜମିଦାର ଘରେ ବିଭା କରି ଘର-ଜୁଆଁଇ ହୋଇ ଦୁଇ

ଦୁଇବର୍ଷ କାଳ ସମ୍ପୂର୍ଣ୍ଣ ଅନାସ୍ଥାସତ୍ତ୍ୱେ କଟାଇବାକୁ ବାଧ୍ୟ ହେଲି । ପୁରସ୍କାର ପାଇଲି ସଜଫୁଟା ମଲ୍ଲି ପରି ଗୋଟିଏ ଅନିନ୍ଦ୍ୟସୁନ୍ଦର ଶିଶୁ । ମାମୁଁ ତାର କିନ୍ତୁ ବଡ଼ ଅହଙ୍କାରୀ । ତୁଚ୍ଛ-ତାଚ୍ଛଲ୍ୟର ମାତ୍ରା ଦିନକୁ ଦିନ ବଢ଼ି ବଢ଼ି ଅସହ୍ୟ ହୋଇ ଉଠିଲା; ତଥାପି ସହିଥିଲି ତାହାର ମୁହଁକୁ ଚାହିଁ—ଯେ ଦେଇଥିଲା ମୋତେ ସେହି ସଜଫୁଟା ମଲ୍ଲି'ର ଅବିକୃତ ପ୍ରତିଚ୍ଛବି । କିନ୍ତୁ ଯେଉଁଦିନ ପରିଣୀତା ପତ୍ନୀ ମୋର, ମୋର କଥା ନ ମାନି ଗୋଟିଏ ସଭାରେ ଯୋଗଦେବା ପାଇଁ ଧାଇଁ ଚାଲିଲେ, ସେହିଦିନ ତାଙ୍କ ଭାଇର କଟୁବାକ୍ୟ ସହି ନ ପାରି ଅଢ଼େଇ ବର୍ଷର ପିଲାକୁ ଗ୍ରହି, ଅନିର୍ଦ୍ଦିଷ୍ଟ ପଥରେ, ଅସହାୟ ଅବସ୍ଥାରେ ବାହାରି ପଡ଼ି ଚାଲିଲି ଉତ୍କଳ କବିରାଜ ଘରକୁ । ସେଠାରେ ତିନି ବର୍ଷ କାଳ ଆଶ୍ରୟ ନେଇ ଅଧ୍ୟୟନ କରି ସାରି ଏଠାକୁ ଆସିଲି, କେବଳ ଭାଗ୍ୟପରୀକ୍ଷା ପାଇଁ । ସୌଭାଗ୍ୟକ୍ରମେ, ଅଳ୍ପଦିନ ମଧ୍ୟରେ ହିଁ ମୋର ପ୍ରଭାବ-ପ୍ରତିପତ୍ତି ବଢ଼ିଉଠିଲା । ଭାଗ୍ୟ-ଲକ୍ଷ୍ମୀ ରୂପେ ପାଇଲି ତମକୁ; ତଥାପି ସେମାନଙ୍କୁ ପଲକ ପାଇଁ ଭୁଲିପାରି ନାହିଁ କେବେ ।

"ଶ୍ୱଶୁରଙ୍କୁ ପତ୍ର ଦେଲି; ଗୋଟିଏ ନୁହେଁ, ଦିଓଟି ନୁହେଁ, ଚାରିଟି କି ପାଞ୍ଚଟି । ସ୍ତ୍ରୀକୁ ଲେଖିଲି ବାର ବାର ସାତ ବାର; ଜବାବ ନାହିଁ । ଦିନ ଯାଏ, ଦିନ ଆସେ । ସେମାନଙ୍କର ବିରହ ବେଦନା ପଲେ ଅନୁପଲେ ଦାଉ ଦାଉ ଜଳିଉଠେ । ନିଜକୁ ବଞ୍ଚାଇ ରଖିବା ପାଇଁ କର୍ମସ୍ରୋତରେ ଦେହ ଭସାଇ ଦେଉଥିଲି; କିନ୍ତୁ ନିରୁ, ଆଜ ମୋର ସବୁ ଚେଷ୍ଟା ବିଫଳ—ମୁଁ ଆଜ ଅବଶ, ଶିଥିଳ, ପଙ୍ଗୁ ! ଆଜ ଦେଖିଆସିଛି ନିରୁ, ଲକ୍ଷପତିର ଜ୍ୟେଷ୍ଠ ସନ୍ତାନ, ଅରଟ ଘୂରାଇ ପେଟ ପୋଷୁଛି, ଦେଖିଆସିଲି ବିନୋଦର ସମ୍ବଳ

ଛିଣ୍ଡା ଚଟି ଖଣ୍ଡେ, ପୋଥିପତ୍ର ଦୁଇ ଚାରିଟି । ନାମ ଲୁଚାଇ ଡାକିଲି 'ଆ, ଆ, ଫେରି ଆ; ତୋର ମାଷ୍ଟ୍ରର ବାପ ତୋହର ପଥ ଚାହିଁରହିଛି ।' ଅଭିମାନୀ ଜବାବ ଦେଲା, 'ବାପ ନୁହନ୍ତି, ଜନ୍ମଦାତା କହନ୍ତୁ, ଜନ୍ମଦାତା, ଜନ୍ମଦାତା ସେ ।' ବାପ ବୋଲି ସୁଦ୍ଧା ସ୍ୱୀକାର କରିବାକୁ ଅନିଚ୍ଛୁକ । କରିବ କାହିଁ ? ଜନ୍ମଦାତା ହେବା ଯେତେ ସହଜ, ବାପା ହେବା ତ ସେପରି ନୁହେଁ ? କେତେ ଦାୟିତ୍ୱ ମୁଣ୍ଡରେ ବହିଲେ ପିତାର ଗୁରୁଦାୟିତ୍ୱ ସମ୍ପନ୍ନ ହୁଏ ! ଶିକ୍ଷିତ, ଜାଣେ ସବୁ —ବୁଝେ ସବୁ ସେ । କିନ୍ତୁ ସେ ତ ଜାଣେ ନାହିଁ, ଦେଶକୁ ଫେରିବା ପଥ ବନ୍ଦ କରିଥିଲେ ତାହାର ମା—ତାହାର ଗର୍ଭଧାରିଣୀ । ପିତାମାତାର ଆଦରିଣୀ କନ୍ୟା, ବଡ଼ ଅଳ୍ପକେ ଅଧୀର ହୋଇ ଉଠୁଥିଲେ ସେ । ସାମାନ୍ୟ କଥାରେ ରାଗ ଦେଇ ବସିଲେ, ମୋର ସଂଶ୍ରବ ରଖିଲେ—ବିନୋଦର ମୁଣ୍ଡ ଖାଇବ । ବାପ ହୋଇ ସେ କଥା କମିତି କରି କହିବ ତାକୁ—ମାତୃଭକ୍ତ ବାଳକ, ବୁଝାଇଲେ ମଧ୍ୟ ବୁଝିବ କାହିଁ ? ଦି ବର୍ଷ ହେଲା ମା ତାର ସ୍ୱର୍ଗରେ । ଭାବୁଛି ନିର୍—ଜାହା ହିଁ ହେଉ, ତାହାର ପାଇଁ ଦରିଦ୍ରତାର ମଧୁରତା ଆଉ ଥରେ ନୂଆ କରି ଭୋଗ କରିବ ମୁଁ ।"

× × ×

ନିରୁପମା ପୁଅକୁ ସ୍ୱାମୀଙ୍କ ପାଖରେ ବସାଇ ରଖି ଗାଡ଼ ନେଇ ବାହାରି ପଡ଼ିଲେ ତାହାର ବସାକୁ—ଯାହାକୁ ନେଇ ଏତେ କାଣ୍ଡ । ବିନୋଦ ଟେସତେବେଳେ ନିବିଷ୍ଟ ମନରେ କଣ ଗୋଟାଏ ପଢ଼ିବାରେ ଲାଗିଛି । ଚୁଡ଼ିର ରଣଝଣ ଶବ୍ଦରେ ଚମକି ଉଠି ଚାହିଁ ଦେଖେ— ଏକ ଦେବୀପ୍ରତିମା ନାରୀମୂର୍ତ୍ତି । ଆତଙ୍କରେ ଥରଉଠି ସେ ଘର-ବାଳାକୁ ଡାକିଲା, "ମାଉସି ! ମାଉସି !"

"ମାଉସୀ ନୁହେଁ, ମା—ତୋର ମା"—କହି ନିରୁପମା ଧାଇଁ ଯାଇ ତାକୁ କୋଳକୁ ଟାଣିନେଲେ । ଡାକ ଶୁଣି ଘରବାଲି ଜମ୍ଭୁବନ୍ତ ବାହାର ଆସି ଏ ଦୃଶ୍ୟ ଦେଖି ଅବାକ୍ ହୋଇ ରହିଲି । ଅଠର ବର୍ଷ ପୁଅକୁ କୋଳରେ ଧରି ବସିଛି ଏ କିଏ ଲେ ମା ! ଅଇଲି କାହୁଁ ? ବ୍ୟାପାର କଣ ବୁଝି ନ ପାରି ଚାଟକା ହୋଇ ଗୃହିଁ ରହିଲି ସେ । ନିରୁପମା କହିଲେ, "ମୋହର ଅଭିମାନୀ ପୁଅ ମା, ବାପ ଉପରେ ରାଗ କରି ଏତେ କାଳ ଘର ଛାଡ଼ି ଇଆଡ଼େ ସେଆଡ଼େ ବୁଲି ବୁଲୁଥିଲି । ଆଜ ଖବର ପାଇ ବାପ ତାର ଡାକ ଡାକ ହାଇରାଣ ହୋଇ ଦାରୁଣ ବେଦନା ନେଇ ଫେରି ଯାଇଛନ୍ତି, ନିରାଶ ବ୍ୟଥାରେ ଆତ୍ମଘାତୀ ହେବାପାଇଁ । ବାପ ବିନୋଦ, ମା-ବାପ ଯେ ସମାନ ତୋର, ବାପ ଉପରେ ଅଭିମାନ କଣ ସାଜେ ? ମା ଯେ ତାଙ୍କ ଗୋଡ଼ରେ ମୁଣ୍ଡ ଥୋଇ ଧନ୍ୟ ହୁଏ । ଦେଖ, ମୁଁ ଯେ ଧାଇଁ ଆସିଛି ତୋତେ ନେବାପାଇଁ—ବାପକୁ ତୋର, ଜନ୍ମଦାତାଙ୍କୁ ତୋର ବଞ୍ଚାଇବା ପାଇଁ । ବିମାତା ବୋଲି ମୋତେ କଣ ଛଡ଼ିଦେବୁ ବାପ ? ତୁ ଯେ ମୋର ସର୍ବସ୍ୱ, ତୁ ଆଗ—ସୁଦାମ ପଛେ ପଡ଼ି !"

ଆକୁଳ ଆବେଗରେ ମା' ମା' ବୋଲି ତାଙ୍କ କୋଳରେ ମୁହଁ ପୋତି ବିନୋଦ ଝରାଇ ଦେଲି ଅଝର-ଝର ଶ୍ରାବଣର ବାରି-ଧାରା ତାଙ୍କର କୋଳରେ, ମନରେ—ପ୍ରାଣରେ ।

—:*:—

# କକ୍ଷଚ୍ୟୁତ

ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା, ବ. ଏ.

ସେ ଅଞ୍ଚଳରେ ସାନ୍ତର ଥିଲେ ଜଣେ ସ୍ୱନାମଧନ୍ୟ ପୁରୁଷ । ରୂପଗୁଣ, ବିଦ୍ୟାବୁଦ୍ଧି, ପ୍ରଭାବ-ପ୍ରତିପତ୍ତି କୋଉଥିରେ ସେ ଊଣା ନ ଥିଲେ । ସୌଖୀନ ଆଭିଜାତ୍ୟଶ୍ରେଣୀ ସହିତ ସମ୍ପର୍କ ଥିଲା ତାଙ୍କର ଖୁବ୍ ବେଶି, ବିଶେଷତଃ ଗୃହିଣୀଙ୍କ ଆଡ଼ୁ । ପିଲାଟି ଦିନୁ ସାନ୍ତର ଥିଲେ ଜଣେ ସ୍ୱାଧୀନଚେତା ବ୍ୟକ୍ତି । ସେଥିପାଇଁ ସ୍ୱାଧୀନ ଭାବରେ ବ୍ୟବସାୟ ଚଳାଇ ସେ ବେଶ୍ ଦି ପଇସା ରୋଜଗାର କରିପାରୁଥିଲେ । ତା ଛଡ଼ା ବାଡ଼ିବଗିଚା କରିବାରେ ତାଙ୍କର ଥିଲା ଖୁବ୍ ଝୁଙ୍କ । ସେ ଅଞ୍ଚଳର ଲୋକେ କହନ୍ତି— ସାନ୍ତର ଅମୃତହସ୍ତା । ଯୋଉଥିରେ ତାଙ୍କ ହାତ ଲାଗିବ, ତାହା ସୁନା ପାଲଟିଯିବ । ନଇଲେ ଏମିତି ଠାଙ୍ଗରା, ମୁଖରା, କଙ୍କରିଆ ଜମିଟାରେ ସେ ଏମିତି ଗୋଟାଏ ନନ୍ଦନକାନନ ସୃଷ୍ଟି କରିଦେଇ ପାରିଥାନ୍ତେ ବର୍ଷ କେଇଟା ଭିତରେ ! ବଗିଚା ଭିତରେ କେତେ ଫୁଲଫଳ ଗଛ ଭରି ହୋଇଥାଏ, ଯୋଉ ଋତୁରେ ଯୋଉ ଫଳ । ବାଦସାଭୋଗ ଆମ୍ବ, ବାଟାଭିଆ ନାରଙ୍ଗୀ, ସିଲୋନି ଅମୃତଭଣ୍ଡା, ସିଙ୍ଗାପୁରି ସପୁରି, ଆଙ୍ଗୁର କେତେ କ'ଣ ବଗିଚାରେ ଲାଗିଛି ।

ଘୋଡ଼ାରୁ ଓଟି ସାନ୍ତର ପ୍ରତିଦାନ ବଗିଗୃଆଡ଼େ ବୁଲି ଯାଆନ୍ତି । ଫେରିଲାବେଳେ ସାଙ୍ଗରେ ଆସୁଥାଏ ମକରମାଳୀ ଗୋଟାଏ ବୋଝ ମୁଣ୍ଡାଇ । ଝୋଟକେଇରେ ଥାଏ ସଦ୍ୟତୋଳା ଲେମ୍ବୁ, ନାରଙ୍ଗୀ ଫଳ ଫୁଲୁରି, ଶାକସବ୍‌ଜି; କେତେ କଣ । ସବୁ ଛନ୍ ଛନ୍ ପାଚିଲା କଞ୍ଚା । ବଜାରର ଶୁଖିଲା ପାଣିଛିଞ୍ଚା ବାସି ଜିନିଷ ତ ନୁହେଁ । ସବୁ ସଜ, ସବୁ ତଟକା, ସବୁ ଖାଲି ଭିଟାମିନ୍ ଭରା । ପୋଖରୀରେ ମାଛଗୁଡ଼ା କରିଛନ୍ତି ସାନ୍ତର । ପାଣି ଉପରେ ପାଟି ପାକୁ ପାକୁ କରି ଭାସୁଥାନ୍ତି କସରା ମୁଣ୍ଡିଆ ରୋହି ଓ ଭାକୁର । ମୁଣ୍ଡଘୂରିଆ ଜାଲ ଖେପେ ପକାଇଦେଲେ ଘରେ ମାଛ ତିଅଣ । ବିଲରୁ ଆସେ ପଦ୍ମକେଶରୀ ଧାନର ଧଳା ଫର୍ ଫର୍ ଅରୁଆ ଚାଉଳ । ଗୁହାଳରେ ବନ୍ଧା ହୋଇଥାନ୍ତି କଳା କସରା ଯୋଡ଼ିଏ ହାଷ୍ଟପରି ଗାଈ । ସାନ୍ତାଣୀ ପହ୍ନାରେ ହାତ ମାରିଦେଲେ ବାଲିଟି ଭର୍ତ୍ତି । ଦୁଧ ଦହି କେତେ ଖାଇବ ! ସାନ୍ତାଣୀ କଞ୍ଚା କଞ୍ଚା ସଜ ଲହୁଣୀ ତିଆରି କରି ଦିଅନ୍ତି । ସକାଳେ ସାନ୍ତରଙ୍କର ବ୍ରେକଫାଷ୍ଟ୍ ହୁଏ ସେଇ ଘର ତିଆରି ସଜ ଲହୁଣୀରେ । ବଳକା ଲହୁଣୀତକ ଚୁଲିରେ ବସାଇ ଦେଲେ ହଳଦୀଗଣ୍ଡି ପରି ଗୁଆ ଘିଅ ତିଆରି ହୋଇଯାଏ । ଦିପହର ସାନ୍ତରଙ୍କର 'ଲଞ୍ଚ'ରେ ପଦ୍ମକେଶରୀ ଚାଉଳର ଭାତ ଉପରେ ଘର ତିଆରି ଘିଅର ମହକରେ ଖାଇବାଟେବୁଲ ମହକି ଉଠେ । ଲୋକେ କହନ୍ତି—ସାନ୍ତରଙ୍କର କୋଉ କଥାରେ ଅଭାବ ! ଲକ୍ଷ୍ମୀ-ସରସ୍ୱତୀ ଯେପରି ହାତ ଧରାଧରି ହୋଇ ସାନ୍ତରଙ୍କର ଦି କାନ୍ଧରେ ବସିଛନ୍ତି !

ସାନ୍ତର ଯେ ଆପେ କେବଳ ସୁଖରେ ଚଳନ୍ତି, ତାହା ନୁହେଁ, ବଡ଼ ଦୟାଳୁ, ବଡ଼ ପରୋପକାରୀ ମଣିଷଟିଏ ସେ । କାହାର

ଦୁଃଖକଷ୍ଟ ସହିପାରନ୍ତି ନାହିଁ । ଯେ ଯେତେବେଳେ ଆସି ହାତ ପତାଇଛି, ସେ ସାନ୍ତରାଙ୍କ ପାଖରୁ ଖାଲି ହାତରେ ଫେରିନାହିଁ । ଖାଲି ସେତିକି ନୁହେଁ, ବୁଦ୍ଧି ବତେଇ ଦେବାରେ ସାନ୍ତରା ଧୂରନ୍ଧର । କେତେ ଖୁଣୀ ଆସାମୀଙ୍କୁ ଫାଶିଖୁଣ୍ଟରୁ ମୁକୁଳାଇ ଦେଇଛନ୍ତି; କେତେ ନିବୁଦ୍ଧିଆ ଅଳସୁଆଙ୍କୁ ବ୍ୟବସାୟ ବୁଦ୍ଧି ବତାଇ ଦେଇ ସେ ବଡ଼ଲୋକ କରି ଦେଇଛନ୍ତି । ସେଇଥିପାଇଁ ସାନ୍ତରାଙ୍କର ଆଗ-ବାହାର ଦାଣ୍ଡକୁ ଘରଟି ସବୁବେଳେ ଲୋକବାକରେ ଭରି ହୋଇଥାଏ । ସାନ୍ତରା ଘରୁ ବାହାର ଦାଣ୍ଡକୁ ଆସିଲେ ସଦାବେଳେ ପାଞ୍ଚ ଦଶ ଜଣ ଲୋକ ତାଙ୍କ ପିଛା ଧରି ଚାଲିଥାନ୍ତି । ଫଳରେ ସେ ଅଞ୍ଚଳରେ ସାନ୍ତରା ଥିଲେ ଜଣେ ମୁକୁଟହୀନ ରାଜା କହିଲେ ଚଳେ ।

କଥାରେ କହନ୍ତି—ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍ । ବିଧାତା ମଧ୍ୟ ସାନ୍ତରାଙ୍କୁ କୌଣସି ଗୁଣରେ ଊଣା କରି ନ ଥିଲେ । ସେ ଯାହାଙ୍କ ହାତ ଧରିଥିଲେ, ସେ ବି ଥିଲେ ରୂପଗୁଣରେ ଅତୁଳନୀୟା । ଧନୀ ଆଭିଜାତ୍ୟ-ସମ୍ପନ୍ନ ପରିବାରର କନ୍ୟା । ଏପରି ସ୍ଥଳେ ସାନ୍ତରାଙ୍କ ଭଳି ସ୍ୱାମୀ ପାଇ ସେ ଖୁବ୍ ସୁଖୀ ହେବାର କଥା । କିନ୍ତୁ କେଜାଣି କାହିଁକି, ସେ ସେତେ ସୁଖୀ ହୋଇ ପାରୁ ନ ଥିଲେ । ତା'ର କାରଣ ହେଉଛି ଯେ, ତାଙ୍କ ମନରେ ଆଭିଜାତ୍ୟର ସ୍ପୃହା ଏତେ ଘନୀଭୂତ ହୋଇଯାଇଥିଲା ଯେ, ସାନ୍ତରାଙ୍କର ସରଳ ନିଷ୍କପଟ ଗାଉଁଲି ଜୀବନ ଯାପନ ସେ ଆଦୌ ପସନ୍ଦ କରିପାରୁ ନ ଥିଲେ । କୌଣସି ହାକିମହୁକୁମାଙ୍କର ପିଲାପିଲି-ମାନେ ତାଙ୍କ ଘରକୁ ବୁଲି ଆସିଲେ ସେ ଯେପରି ଆପଣାକୁ ଖୁବ୍ ଶ୍ରେଷ୍ଠ ମନେକରୁଥିଲେ । ଅବଶ୍ୟ ସାନ୍ତରାଙ୍କର କୌଣସି କଥାରେ ଅଭାବ ନ ଥିଲା । କିନ୍ତୁ ଯେତେବେଳେ ସେ ଗୋଟିଏ ଚାଷୀ

ଶ୍ରେଣୀର ଲୋକ ନା ଆଉ କ'ଣ ? ଢାଲବାଡ଼, ବଗିଚ଼-ପୋଖରୀ, ଏଇଥିରେ ସବୁବେଳେ ଲାଗିଥାନ୍ତି । ତା ନ ହୋଇ ଯଦି ଗୋଟାଏ କଚ୍ଛ ଓକିଲବାକର କରିଥାଆନ୍ତେ କି ହାକିମହୁକୁମା ହୋଇଥାନ୍ତେ, ତାହାହେଲେ ଶାନ୍ତିରାଣୀ ଯେପରି ଆହୁରି ବେଶି ଆନନ୍ଦ ପାଇ-ପାରୁଥାନ୍ତେ ! ତା'ପରେ ଏମିତିକା ଗୋଟିଏ ଗୋଟିଆ ଗାଁରେ ପଡ଼ି ରହିବାକୁ ମଧ୍ୟ ଶାନ୍ତିରାଣୀ ଆଦୌ ପସନ୍ଦ କରିପାରୁ ନ ଥିଲେ । ଥରେ ଦି ଥର ସେ ବାପ ଭାଇଙ୍କ ସଙ୍ଗେ କଲିକତା ସହର ବୁଲି ଯାଇଥିଲେ ପିଲାଦିନେ । ସେଇଦିନୁ ବଡ଼ ସହରର ମୋହ ତାଙ୍କ ଆଖିରେ ଗୋଟିଏ ଭେଲକି ଲଗାଇ ଦେଇଛି ଯେପରି । କଥାରେ ଅଛି—ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ । ଶାନ୍ତିରାଣୀର ମନର ଭାବନା ଏତେ ତୀବ୍ର ହୋଇ ଉଠୁଥାଏ ଯେ ସେ କେବେ ଶାନ୍ତିରେ ଶୋଇପାରୁ ନ ଥାନ୍ତି । ଦୋତାଲା ଉପରେ ସାଗୁଆନ୍ କାଠର ସୁନ୍ଦର ସୂକ୍ଷ୍ମ କାମ କରା ପଲଙ୍କର ସୁକୋମଳ ଶଯ୍ୟାରେ ସୁଦ୍ଧା ଶାନ୍ତିରାଣୀଙ୍କର ଆଖିକୁ ନିଦ ଆସେ ନାହିଁ । ପାଖରେ ଗୋଟିଏ ଫିତାବନ୍ଧା ଖଟ ଉପରେ ଶୋଇ ଶାନ୍ତିର ଯେତେବେଳେ ପରମ ଶାନ୍ତିରେ ଘୁଙ୍ଗୁଡ଼ି ମାରୁଥାଆନ୍ତି, ସେତେବେଳେ ଶାନ୍ତିରାଣୀଙ୍କର ମନ ଯାଇ ବୁଲୁଥାଏ କେଉଁ କଲିକତା, ଦିଲ୍ଲୀ କି ବମ୍ବେର ଆଭିଜାତ୍ୟଭରା ବିଳାସ-କକ୍ଷରେ । ଶାନ୍ତିରାଣୀ ବିଛଣାରୁ ଉଠି ଆସି ଦାଲାଣରେ ବସନ୍ତି ; ଅଦୂର ପ୍ରବାହିତ ଶୀର୍ଣ୍ଣକାୟା ନଦୀର ଶୁଭ୍ର ଜଳରେ ରୂପେଲି ଜହ୍ନର ଆଲୁଅ ଝଲମଲ କରୁଥାଏ । କଅଁଳିଆ ଦକ୍ଷିଣାବାଆ ମଝିରେ ଅଗଣାର ଯୂଈ ଓ ହେନାର ସମ୍ମିଳିତ ସୁଗନ୍ଧ ବହିଆଣି ଶାନ୍ତିରାଣୀର ନାକ ସ୍ପର୍ଶକରି ଯାଉଥାଏ । ଶାନ୍ତିରଙ୍କ ଗୁହାଳ ପଛପଟ କୁକୁଡ଼ାଘରୁ ରୋଡ଼ସ୍ ଆଇଲଣ୍ଡ ଗଞ୍ଜାଟା ବଡ଼ ଜୋରରେ ବୋବାଇ ଉଠେ—"କକ୍ଅ, କକ୍ଅ" । ପାହାନ୍ତିଆ

ତାଙ୍କ ଉକ୍ତିମାରେ । ସାନ୍ତବାଣୀ ଦୀର୍ଘନିଃଶ୍ୱାସ ଟେକାଇ ପୁଣି ଘର ଭିତରକୁ ଫେରଆସି ବିଛଣାରେ ଗଡ଼ପଡ଼ନ୍ତି । ସକାଳେ ଉଠି ସାନ୍ତବ ବାଡ଼ିବଗିଚାରେ ବୁଲିଆସି ଦେଖନ୍ତି ଯେ ଗୃହିଣୀ ବିଛଣାରେ ଗଡ଼ଗଡ଼ଉଛନ୍ତି । ସାନ୍ତବ ରସିକତା କରି କହନ୍ତି—'ଗୁଡ଼ ମର୍ଣ୍ଣିଂ ମାଇ ଡିଏର୍, ହାଓ ଡିଡ୍ ଇଉ ସ୍ଲିପ୍ ?' ( ସୁପ୍ରଭାତ ପ୍ରିୟେ, କିପରି ନିଦ ହୋଇଥିଲା ? ) ''ଓ ଫାଇନ୍ ମାଇ ଡିଅର୍'' ( ଅହୋ, ଖୁବ ସୁନ୍ଦର ପ୍ରିୟ ! )

× × ×

ଦିନ ପରେ ଦିନ ଗଡ଼ିଗଲେ । ସାନ୍ତବ ଓ ସାନ୍ତବାଣୀଙ୍କର ଭିତରେ ମନର ଧାରା ଦୁଇ ବିଭିନ୍ନ ଦିଗରେ ଗତି କରୁଥିଲେ ସୁଦ୍ଧା ଉପର ଜୀବନରେ ଦୁଇ ଜଣଙ୍କର ମେଳ ଥିଲା ଖୁବ୍ ସୁନ୍ଦର । ଲୋକେ କହନ୍ତି—ମାଣିକଯୋଡ଼ି । ଷଷ୍ଠୀମାଆଙ୍କର ଅନୁଗ୍ରହରୁ ଛିଲପିଲା ହେଲେ ତିନୋଟି ଝିଅ, ଯୋଡ଼ିଏ ପୁଅ । ବାସ ! ଏତିକିରେ ଶେଷ ! ଆଧୁନିକ ଯାନ୍ତ୍ରିକ ସଭ୍ୟତାର ଯୁଗରେ ଷଷ୍ଠୀ ମାଆଙ୍କର କାରାମତି ଆଉ ବେଶି ଖଟିପାରୁନାହିଁ । ଷଷ୍ଠୀମାଆ ମଧ୍ୟ ମନୁଷ୍ୟର ବୁଦ୍ଧି ଜାଲରେ ଆଜି ବନ୍ଧାହୋଇ ପାରୁଛନ୍ତି ।

ସାନ୍ତବଙ୍କ ଇଚ୍ଛା—ପୁଅଝିଅମାନଙ୍କୁ ପାଠଶାଠ ପଢ଼ାଇ ମଣିଷ କରିବେ । କିନ୍ତୁ ସେମାନେ ନିଜ ବାସସ୍ଥାନରେ ରହି ତାଙ୍କର ସମ୍ପତ୍ତି ଭୋଗକରିବେ । ତାଙ୍କ ମତରେ ମଣିଷ ଶିକ୍ଷିତ ହେଉ କିନ୍ତୁ ସମାଜ ଓ ପରିସ୍ଥିତିରୁ ବିଚ୍ଛିନ୍ନ ନ ହେଉ । ସେ କହନ୍ତି ଯେ ଯଦି ସମାଜର ପ୍ରତ୍ୟେକ ପରିବାର ଏପରି ଭାବରେ ଶିକ୍ଷିତ ହୋଇ ଉଠନ୍ତି, ତେବେ ଆମ ସମାଜ ନିଶ୍ଚୟ ଦିନେ ସୁସ୍ଥ ସବଳ

ହୋଇ ଉଠିବ । ସାନ୍ତରାଣୀ ବ ଗୃହାନ୍ତ ପିଲାଏ ପାଠପଢ଼ନ୍ତୁ, କିନ୍ତୁ ତାଙ୍କ ଭିତର ମନର ଇଚ୍ଛା—ସେମାନେ ଏହି ଗ୍ରେଟିଆ ଗାଁ ଭଳି ସହରରେ ପଡ଼ି ରହିବେ କାହିଁକି—ଯାଆନ୍ତୁ, ଉଡ଼ି ଯାଆନ୍ତୁ ଯେତେ ଦୂରକୁ ଇଚ୍ଛା, ବଡ଼ ବଡ଼ ସହରରେ ରହନ୍ତୁ । ଚରମ ଲକ୍ଷ୍ୟ ଯାହା ଥାଉନା କାହିଁକି, ସ୍ୱାମୀ-ସ୍ତ୍ରୀ ଉଭୟଙ୍କର ପ୍ରାଥମିକ ଲକ୍ଷ୍ୟ ଥିଲା ପିଲାମାନଙ୍କୁ ଉପଯୁକ୍ତ ପାଠ ପଢ଼ାଇ ମଣିଷ କରିବେ । କହନ୍ତି—ମନର ମୂଳେ ଏ ଜଗତ । ଏ ମନ ଭାବୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା; —ତାହା ହିଁ ହେଲା । ପିଲାଗୁଡ଼ିକ ଖୁବ୍ ଉଚ୍ଚଶିକ୍ଷା ପାଇବା ପାଇଁ ବିଲାତ-ଆମେରିକା ଗଲେ । ପିଲାଏ ବିଲାତ ଓ ଆମେରିକାରୁ ଯେଉଁ ଚିଠି ଲେଖନ୍ତି ଓ ସେଠାକାର ସାମାଜିକ ଜୀବନର ଯେଉଁ ଚିଠି ଦିଅନ୍ତି, ସେଥିରେ ସାନ୍ତରାଣୀଙ୍କର ମନର ଗଭୀର କୋଣରେ ଥିବା ଅବଚେତନ ସ୍ତରର କାମନା ଦ୍ୱିଗୁଣିତ ହୋଇଉଠେ । କଥା ପ୍ରସଙ୍ଗରେ ସାନ୍ତରଙ୍କୁ କହନ୍ତି—"ହଇ ହେ, ଦେଖିଲ, ପିଲାଏ ଏଥର ଫେରିଆସିଲେ ଆମେ ଆଉ ଏ ଗ୍ରେଟିଆ ସହରଟାରେ ପଡ଼ିରହିବା ନାହିଁ । ବମ୍ବେ କମ୍ବା ଦିଲ୍ଲୀ ଯେଉଁଠି ହେଉ ଗୋଟାଏ ବଡ଼ ସହରକୁ ଚାଲିଯିବା । ପିଲାଏ ବିଲାତ-ଆମେରିକାରୁ ଫେରି ଏମିତି ଗୋଟାଏ ଅସନା ଗ୍ରେଟିଆ ସହରରେ ଚଳିବେ କେମିତି ?" ସାନ୍ତର ହସି କହନ୍ତି, "ହଇ ହେ, ତମେ କ'ଣ ପାଗଳ ହେଲ ? ଏଇ ଯୋଉ ବାଲିବାଡ଼ି, ବଗିଚ଼ା, ପୋଖରୀ ଆ'କୁ ସବୁ ସମ୍ଭାଳିବ କିଏ ? ଏମାନଙ୍କ ମାୟା ତୁଟାଇବା କ'ଣ ସହଜ କଥା ! ତା'ପରେ କାହିଁକି ବା ଏ ସବୁ ଛାଡ଼ି ଚାଲିଯିବା ? ପିଲାଏ ଆସନ୍ତୁ, ମହା-ମଉଜରେ ଏଇଠି ରହି ଖାଇ ପିଇ ଚଳନ୍ତୁ, ଆଉ ପାଞ୍ଚ ଲୋକଙ୍କୁ ଭଲ ବୁଦ୍ଧି ବତାଇ ସୁଖରେ ରହନ୍ତୁ, ଦଶ ଜଣଙ୍କର ଉପକାର କରନ୍ତୁ । ତେବେ ଯିନା ଯାଇ ସେମାନଙ୍କର ଶିକ୍ଷାର ସଫଳତା

ହେବ ? ସାନ୍ତରାଣୀ ମୋଟେ ସାନ୍ତରଙ୍କ କଥାରେ କାନ ଦିଅନ୍ତି ନାହିଁ, କହନ୍ତି—ତମ ଭଳିଆ କୂପମଣ୍ଡୂକ ବାହାର୍‌ ଜୀବନ କଥା କାହୁଁ ବୁଝିବେ ? ହଉ, ପିଲାଏ ଆସନ୍ତୁ, ତାଙ୍କର ଯାହା ଇଚ୍ଛା ହେବ ତାହା କରିବେ ।

× × ×

ସମୟର ଚକ ଗଡ଼ି ଗଡ଼ି ଯାଏ । ପିଲାଏ କୃତବିଦ୍ୟ ହୋଇ ଫେରନ୍ତି ବିଲାତ ଓ ଆମେରିକାରୁ । ସତକୁ ସତ ତାଙ୍କ ମତି ଯେପରି ବଦଳିଯାଇଛି । ସେମାନଙ୍କ ଜନ୍ମଭୂମି ଏଇ ଗ୍ରେଟିଆ ସହରଟା ଆଉ ତାଙ୍କୁ ଭଲ ଲାଗୁନାହିଁ । ପିଲାଦିନର ସାଙ୍ଗସାଥି-ଗୁଡ଼ାକ ସତେ ଯେପରି ଗନ୍ଧାଉଛନ୍ତି । ସାଇପଡ଼ିଶାଗୁଡ଼ିକ ସବୁ ମଳିମୁଣ୍ଡିଆ । ଏମିତି ବିଲାତ-ଆମେରିକା ଫେରନ୍ତା କୃତବିଦ୍ୟଙ୍କ ପକ୍ଷରେ ଏଠି ଚଳିବା କ'ଣ ସହଜ କଥା ! ପିଲାପିଲିଙ୍କ ମତ ସହିତ ସାନ୍ତରାଣୀ ସମ୍ପୂର୍ଣ୍ଣ ଏକମତ । ଫଳରେ ଆଜିକାଲିର ଗଣତନ୍ତ୍ର ଯୁଗରେ ସାନ୍ତ ପରିବାରର ପାଞ୍ଚଜଣ ମଧ୍ୟରୁ ଚାରିଜଣଙ୍କର ହେଲା ମେଜରିଟି ଅଫ ଭୋଟ; ବିଚରା ସାନ୍ତ କେବଳ ଏକାକୀ ପଡ଼ିଗଲେ । ହିଁ, ଗଣତନ୍ତ୍ର ଯୁଗରେ ଯେଉଁଆଡ଼େ ବେଶି ଭୋଟ, ସେଇଆଡ଼େ ତ ଜିତ୍‌ । ସାନ୍ତ ହାରିଗଲେ । ସାନ୍ତ ଦେଖିଲେ, ପିଲାପିଲିଙ୍କ ଗୃହିଣୀ କେହି ତାଙ୍କ ପ୍ରସ୍ତାବରେ ରାଜି ନୁହନ୍ତି । କ'ଣ ଆଉ କରିବେ— ଗଣତନ୍ତ୍ର ମତରେ ତାଙ୍କର ନିଜ ଇଚ୍ଛାକୁ ମେଜରିଟି ଭୋଟ ଆଗରେ ବଳି ଦେବାକୁ ପଡ଼ିଲା ।

ବହୁ ଦିନର ବସବାସ ସୁନ୍ଦର ଘରଟି ଓ ଆପଣାର ଅତି ପ୍ରିୟ ବଗିଚା-ପୋଖରୀ ସବୁ ବିକିବାକି ଦେଇ ଯେଉଁଦିନ ସାନ୍ତ ନିଜ

ଜନ୍ମଭୂମି ଗ୍ରାମ 'ମେଜରିଟି ଭୋଟ'ର ପିଠ୍ଠ ଧରିଲେ, ସେଦିନ ତାଙ୍କ ଗ୍ରାମ ପିଞ୍ଜରୀକୁ ଥରିର ଦେଇ ବାହାରି ପଡ଼ିଲା ଗୋଟାଏ ଦୀର୍ଘନିଶ୍ୱାସ। ସାନ୍ତରିଙ୍କର ବସ ଯେଉଁଦିନ ସାନ ସହର ଗ୍ରାମ ବଡ଼ ସହର ଆଡ଼େ ବାହାରିଗଲା, ସେଦିନ ନିଜର ସାଙ୍ଗସାଥି ସବୁ ଲୋକ ଆସି ସାନ୍ତରି ଘରିବାରିଙ୍କୁ ବିଦାୟ ଦେବା ସଙ୍ଗେ ସଙ୍ଗେ ଆଖି ଛଳଛଳ କରି ପକାଇଲେ । ସାନ୍ତରି ମଧ୍ୟ ହୃଦୟାବେଗ ସମ୍ଭାଳି ନ ପାରି ପିଲାଙ୍କ ପରି ଭେ ଭେ ଡ଼ାକପାରି କାନ୍ଦି ପକାଇଲେ । ସାନ୍ତରାଣୀ ପାଟିରେ ରୁମାଲ ଗେଞ୍ଜି କହିଲେ, "ଛିଃ, କି ସେଣ୍ଟିମେଣ୍ଟାଲ (ଭାବପ୍ରବଣ)!" ପିଲାମାନେ ନୀରବ ରହିଲେ ।

ସେଇଦିନୁଁ ସାନ୍ତରିଙ୍କର ବ୍ଲଡ଼୍‌ପ୍ରେସର୍ ବଢ଼ି ବଢ଼ି ଯାଉଛି । ଯେତେ ଚେଷ୍ଟା କଲେ ବି ଆଖିକୁ ରାତିରେ ନିଦ ଆସୁନାହିଁ । କିଛି ଦିନ ପୁଅଘରେ ରହିଲେ ତ କିଛିଦିନ ଝିଅମାନଙ୍କ ଘରେ ରହୁଛନ୍ତି; କିନ୍ତୁ ସବୁଜାଗାରେ ସାନ୍ତରିଙ୍କୁ କେହି ସାନ୍ତରି ବୋଲି ଚିହ୍ନୁ ନାହାନ୍ତି । ପୁଅଙ୍କ ବନ୍ଧୁମହଲରେ ସାନ୍ତରି ପୁଅଙ୍କ ବାପ ନାମରେ ପରିଚିତ ହୁଅନ୍ତି । ଝିଅଘରେ ଜୋଇଁଙ୍କ ଶ୍ୱଶୁର ଭାବରେ ପରିଚିତ ହୁଅନ୍ତି । ସାନ୍ତରି ବିଛଣାରେ ପଡ଼ିଲେ ଦେଖନ୍ତି— ତାଙ୍କର ସେଇ ଛୋଟିଆ ଜନ୍ମ-ମାଟିର ସ୍ୱପ୍ନ । ଯେଉଁଠି ସେ ଥିଲେ ସାନ୍ତରି ସ୍ୱନାମଧନ୍ୟ ପୁରୁଷ । ବର୍ତ୍ତମାନ ସେ ବଡ଼ ସହରରେ ରହୁଛନ୍ତି, ପୁଅଝିଅମାନେ ବଡ଼ ଚାକିରି କରି ବହୁ ରୋଜଗାର କରୁଛନ୍ତି । ତଥାପି ତାଙ୍କର ବ୍ଲଡ଼ପ୍ରେସର କମୁନାହିଁ, ସେ ଯେପରି ଭାବୁଛନ୍ତି, ଚିରଦିନ ପାଇଁ ସେ ହୋଇଛନ୍ତି ଗୋଟାଏ କକ୍ଷଚ୍ୟୁତ ଗ୍ରହ, ଗୋଟାଏ ନିର୍ମୂଳ ଲତା ।

———

# କହିବା କଥା

ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଳ, ବି. ଏସ୍‌-ସି.

କହିବା କଥା ଅନେକ ଅଛି, କିନ୍ତୁ କହିବା ସେତେ ସହଜ ନୁହେଁ, ଅର୍ଥାତ୍‌ କହିଦେବି ବୋଲି ଭାବିବା ଯେତେ ସହଜ, କହିବା କଥାଟିକୁ ମାଜି ସଜାଡ଼ି ସମସ୍ତଙ୍କ ଆଗରେ ଥୁଆ କରାଇବା ସେତେ ସହଜ ନୁହେଁ ।

ଏ କଥାଟା ମୋ ବନ୍ଧୁ ଶ୍ୟାମର ମନକୁ ଆଦୌ ପାଏ ନାହିଁ । ସେ କହେ, ଏଉଟା ଛଟାଣ ! କରେ, ତୋର ଯାହା କହିବାକୁ ଇଚ୍ଛା, ତୁ ତ ବଡ଼ ପାଟି କରି ସଳଖେ ସଳଖେ କହିଯିବୁ, ସେଥିରେ ଭଲ ଅଡ଼ୁଆଟା ଅଛି କଣ ! ···ଶ୍ୟାମ ଲୋକଟି ମନ୍ଦ ନୁହେଁ, ତେବେ ଟିକିଏ ଅଖାଡ଼ୁଆ । ହାତ ଗୋଡ଼ ଶକ୍ତ ଓ ମୋଟା ମୋଟା, ଗାଲ ଫୁଲୁକା ଫୁଲୁକା, ଆଖି ବଡ଼ବଡ଼, ଗୁଡ଼ିଏ ବୃଷାଳ, ହୁଣ୍ଡା । କଥାଏ ଦୁଇ କଥାରେ କାମ ନ ହେଲେ ହାତ ଗୋଡ଼ ଚଳାଇବାକୁ ତାର କିଛିମାତ୍ର ଦ୍ୱିଧା ନାହିଁ । ତା ତୁଣ୍ଡରୁ ଯୋଉ କଥା ବାହାରେ; ତାର ମାନେ ଏକାବେଳକେ ପରିଷ୍କାର, ଭୁଲ ବୁଝିବାର ଗୃହ ନାହିଁ ।

ଶ୍ୟାମ ଯାହା କହେ ମୋତେ ଏ ସମ୍ପର୍କରେ, ତା କଥାଗୁଡ଼ାକ ତା ନିଜ ବେଳକୁ ବିଲକୁଲ ଠିକ୍ ଠିକ୍ ହେବାଭଳି ଜଣାପଡ଼େ । ସେ ବୁଝିପାରେ ନା, ମୁଁ କାହିଁକି ମୋ କଥାଗୁଡ଼ାକ, ମୋ ମତାମତ-ଗୁଡ଼ାକ ତାହା ପରି ନିରାଟ ଦେହ ବଳରେ ବା ଗୁଣ୍ଡ ବଳରେ ଅନ୍ୟମାନଙ୍କ ଉପରେ ଚଳାଇପାରେ ନା ।

ଶ୍ୟାମକୁ ଅଡୁଆ ଲାଗେ । ସେ ବୁଝିପାରେ ନା, ମୋ ଭଳି ବୁଦ୍ଧିମାନ ଆଉ ନାନା କଥା ଜାଣିଥିବା ଲୋକ ପକ୍ଷରେ ନିଜ କଥାଟା କହିବାବେଳକୁ ଏତେ ବାଧା କୁଆଡ଼ୁ ଆସି ପହଞ୍ଚୁଛି । କିନ୍ତୁ ବାଧା ଅନେକ ଅଛି, ଆଉ ଥିବ ।

କହିବା କଥା କହିଦେବାଟା ଅନ୍ତତଃ ମୋ ପକ୍ଷରେ ଆଦୌ ସହଜ ନୁହେଁ ।

ବୁଝନ୍ତି, ଆପଣଙ୍କ ମନର ଗମ୍ଭୀର ଘର ଭିତରେ ଗୋଟାଏ ପ୍ରାଣୀ ଛଟପଟ ହେଉଛି, ଖାଲି ଗୋଟିଏ କଥା ପଚାରିବା ପାଇଁ । ଆଉ ସେ କଥାଟା ଅନ୍ୟ କିଛି ନୁହେଁ ଯେ, ଖାଲି ମୋର ବାଧାଟା ପ୍ରକୃତରେ କଣ, ଏତିକି ଜାଣିବା ପାଇଁ ।

ହଉ, କହୁଛି । କିନ୍ତୁ ଶୁଣିବା ପରେ ବି ଯଦି ଆପଣଙ୍କର ସଂଶୟ ଦୂର ନ ହୁଏ, ଯଦି ଆପଣଙ୍କ ମନର ଗମ୍ଭୀର ଘର ଭିତରୁ ସନ୍ଦେହପୂର୍ଣ୍ଣ "ହୁଁ—ଉହୁଁ" ଗୁଡ଼ାଏ ଶୁଣାଯାଏ, ତେବେ ତା ପରେ ଯେପରି ମୋତେ ସମସ୍ତଙ୍କ ଆଗରେ ଠକ-ଜୁଆଚୋର ବୋଲି ବେଇଜ୍ଜତ୍ କରିବେ ନି ।

କାରଣ ମୁଁ ମୂଳରୁ ହିଁ କହି ରଖିଚି, କହିବା କଥା କହି ଦେବାଟା ଆଦୌ ସହଜ ନୁହେଁ ।

ରଘୁ କବିତା ଲେଖେ । ଲେଖେ, ଅନ୍ଧାର ରାତିରେ ଜୁଳୁଜୁଳିଆ ପୋକର ଆଲୁଅ ଜଳିଉଠିଲେ ମୋତେ ଜଣାଯାଏ ଯେପରି ତୁମର ଅନିନ୍ଦ୍ୟ ମୁଖଛିଟା ମୋ ଆଖି ଆଗରେ ଝଲକି ଯାଉଛି ! ଲେଖେ, ଗରିବ ମୁଁ, ବଞ୍ଚିତ ମୁଁ, ଲାଞ୍ଛିତ ମୁଁ । ମୋର କେତେ ଅଭିଳାଷ ହୃଦୟରେ ଉଇଁ ସମସ୍ତଙ୍କ ଅଜାଣତରେ ଅତୃପ୍ତ ଭାବରେ ଝାଉଁଳି ମଉଳି ଝଡ଼ି ପଡ଼ୁଛି, ସେ କଥା କାହାକୁ କହିବି ! ଲେଖେ, ମଣିଷମାନେ କଳ ତିଆରି କରିଛନ୍ତି ଏମାନେ । ଯେଉଁଥିରେ ଏମାନେ ସମାଜ ନାମରେ, ଶାନ୍ତି ନାମରେ, ଶୃଙ୍ଖଳା ନାମରେ ମଣିଷର ଅନ୍ତର ମଥିତ ଆଶାଆକାଙ୍କ୍ଷା ସ୍ୱପ୍ନକୁ ଯନ୍ତାରେ ପକାଇ ପେଷି ଦେଉଛନ୍ତି । ଏମାନଙ୍କ ବିରୁଦ୍ଧରେ ମୋର ଅଭିଯାନ—ମୋ ହାତରେ ରକ୍ତ ପତାକା, ମୁଣ୍ଡ ଉପରେ ଲଙ୍ଗଳାତାରା, ଆଖିରେ ରୁଦ୍ରଙ୍କର ମଶାଲ ।

ରଘୁ କବିତା ଲେଖେ—ପ୍ରାଣ ଢାଳି କବିତା ଲେଖେ । ମୁଁ ପଢେ; ମୋ ଭଳି ଆହୁରି ଅନେକ ନିରୀହ ଜୀବ ତାହା ପଢ଼ନ୍ତି, ପଢ଼ି ଚମକିଯାଆନ୍ତି । ପ୍ରେମିକ ରାତିଯାକ ଭୁଲି ବାଉଁଶବଣ ପାଖରେ ବସି ଅନ୍ଧାର ରାତିରେ ଜୁଳୁଜୁଳିଆ ପୋକଙ୍କ ନୃତ୍ୟ ଦେଖେ—ପ୍ରିୟା ମୁଖ ପରିବର୍ତ୍ତିରେ ବାଉଁଶ ବୁଦାର କିଁୟା-କର୍ କର୍ କର୍; ଆଉ ଆକଟେ ବିଚରାର ଭୂତର ଭୟଟା ପ୍ରବଳ ହୁଏ । ପ୍ରିୟାମୁଖ ଭାବନାରେ ବିଭୋର ହେବାର ଆଶା ଗୁଡ଼ି ସେ ଘରକୁ ଲେଉଟି-ଯାଏ—ଉପାସରେ ଶୋଇ ଶୋଇ ଶତ ବୁଭୁକ୍ଷିତର, ଶତ ବଞ୍ଚିତର, ଶତ ଲାଞ୍ଛିତର ସ୍ୱପ୍ନସବୁ ଦେଖେ ।

ବେକାର ଯୁବକ ଅଶନିକୁମାର ରଘୁର କବିତା ପଢ଼େ । ସଙ୍ଗୀ ଟୋକାକୁ ଡାକି କହେ—ବାଃ, କି ଚମତ୍କାର ଲେଖୁଚି ଆମ ରଘୁ । ଏଇଭଳି ଦୁଇଟା ଗୁରୁଟା ଲେଖକ ବାହାରନ୍ତେ କି, ଆମ ଦେଶଟା ଗ୍ରାମକ ଭିତରେ ଦେଶ ଭଳି ଦେଶଟାଏ ହୋଇ-ଯାଆନ୍ତା । ଆଉ ଆମର ଏ ଦୁଃଖ ଚିନ୍ତା ରହନ୍ତା ! ବାଃ ! ସେଦିନ ସମସ୍ତେ ସମାନ—ଯେଝା ହାତରେ ଚଉଦ ପା' !! ରଘୁର କବିତା ଅଶନିର ମନକୁ ପାଏ ।

କିନ୍ତୁ ଅଶନିର ସଙ୍ଗୀ ରଜନୀ ସେଥିରେ ଆଦୌ ସାନ୍ତ୍ୱନା ପାଏ ନାହିଁ । ତା ମନ ଆଦୌ ସମ୍ଭାଳି ପାରେ ନାହିଁ । ବଞ୍ଚିତ ? ହଁ, ବଞ୍ଚିତ ସେ । ତାଠାରୁ ଭଲି ଅଧିକ ବଞ୍ଚିତ କିଏ ? ପିଲାଟିବେଳେ ବାପ ମରିଗଲେ । ଦୁଇ ଜଣ ଖୁଡ଼ୁତା ମିଳି ବିଷୟ-ସମ୍ପତ୍ତିଗୁଡ଼ିକ ଇମିତି ନ୍ୟାଯ୍ୟନିଶାପ ବାଣ୍ଟି ଭାଗ କରିନେଲେ ଯେ, ଏଇ ପାଞ୍ଚ ବର୍ଷ ଭିତରେ ବିଚରା ରଜନୀ ଆଉ ତାର ବିଧବା ମାଆଟିର ଯୋଉ ଶୋଚନୀୟ ଦୁରବସ୍ଥା ହେଲାଣି, ତା କହିଲେ ନ ସରେ । ବିଚରା ରଜନୀ ନିହାତି ଗରିବ, ଅତି ନିର୍ମମ ଭାବରେ ବଞ୍ଚିତ ଆଉ ପଦେ ପଦେ ଲାଞ୍ଛିତ । କେହି ଟିକିଏ ଆହା କରିବାକୁ ନାହିଁ, କିନ୍ତୁ ତାର ଅଭିଳାଷ କଣ ? ସେ ତ ଚାହେଁ ନା ଯେ, ରଜା ହୋଇ ବସିବ, ରାଜଗାଦିରେ ବସି ପରସ୍ୱାପହାରୀ ଦୁଇ ଖୁଡ଼ୁତାଙ୍କୁ ଶୂଳରେ ଚଢ଼ା-ଇବ । ସେ ଚାହେଁ, ଖାଲି କେମିତି ତାର ଇସ୍କୁଲ ଦରମା ଆଉ ବହି କେତେ ଖଣ୍ଡି କିଣିବାର ଦାମଟା କେହି ଦୟାକରି ଦେଇ ଦିଅନ୍ତା କି, ସେ ବିଚରା ପାଠ ପଢ଼ନ୍ତା—ମଣିଷଟାଏ ହୁଅନ୍ତା, ମାଆକୁ ସୁଖରେ ରଖନ୍ତା । ନିଜେ ପାଞ୍ଚ ଜଣଙ୍କ ଭିତରେ ଜଣେ ହୋଇ ପାରନ୍ତା ।

ରଜନୀ ଭବେ—ଏଗୁଡ଼ା ତ ହାତରେ ଲମ୍ବାଇବା କଥା—ଯାଙ୍କୁ ନେଇ ପୁଣି "କବିତା" କରିବ କଣ ? ରଘୁର ପ୍ରାଣତଳ। କବିତା ପଡ଼ି ସେ କାଠ ପାଲଟିଯାଏ । ଭାବେ, ଲେଖକ ରଘୁ ନିଶ୍ଚେ ଏଇ ଗରିବ, ବଞ୍ଚିତ, ଲାଞ୍ଛିତ ଦଳର ଜଣେ ନୁହେଁ । ସେ ସେମାନଙ୍କର ମନର ଖବରଖବର କିଛି ଜାଣେ ନା, ବୃଥା ଗୁଡ଼ାଏ ଗାରେଇ ପକେଇଛି ।

ଭାବିଲି, ଆଚ୍ଛା ମଧୁ ମିଶ୍ରେ ତ ଜଣେ ପକ୍କା ସମାଜ-ସଂସ୍କାରକ । ସେ ନିଶ୍ଚେ ରଘୁର ଶେଷ କବିତାର ଭାବଧାରାକୁ ପ୍ରାଣ ଦେଇ ସଙ୍ଗୋଳି ନେଇଥିବେ—କହିଥିବେ, ମୋ ମନ କଥାଟା କହି ଦେଇଛି କବି । ମୋର ଆତ୍ମାର ସହୋଦର ଏ ନିଶ୍ଚେ (Brother in Spirit) । ଗଲି ଏଇ ଉଦୁଉଦିଆ ଖରାରେ ମିଶ୍ରଙ୍କ ଘର ପର୍ଯ୍ୟନ୍ତ । ଭାଗ୍ୟକୁ ମିଶ୍ରେ ବି ଘରେ ଥିଲେ ।

ମିଶ୍ରେ ବଡ଼ ବ୍ୟସ୍ତ । କେତେ ଅଂଶରେ ସଂସ୍କାରର କେତେ ଧୂମଧାମ୍ ଚାଲିଛି । ମୋ ଭଳି କୋଣପଶାକୁ ସେ ସବୁ ଖବର ଜଣାଥାଆନ୍ତା କୁଆଡ଼ୁ ! ଯା' ହେଉ, ମିଶ୍ରେ ନାନା କ ଗଜପନ୍ଥ ପାଣ୍ଠି ଦୁଇ ଚାରି ଜାଗାକୁ ମିଟିଂ ପାଇଁ ଜରୁରି ଚିଠି ଲେଖିଦେଇ, ଟିକଏ ଥକ୍କା ଧରି ବସି ପଚାରିଲେ—କହୋ, ସକାଳୁ କୁଆଡ଼େ ?

କହିଲି, ବଡ଼ ମୁସ୍କିଲରେ ପଡ଼ି ଆସିଛି ଆପଣଙ୍କ ପାଖକୁ । ଟିକଏ ବେଳ ହେବ କି ? ମୂଳରୁ କଥାଟା କହିଯାଆନ୍ତି ।

ମିଶ୍ରେ ଜବାବ ନ ଦେଇ କୁରୁଚି ଉପରେ ଭଲ କରି ଡେଙ୍ଗି ଦେଇ ବସିଲେ । ଅର୍ଥ ଆରମ୍ଭ କର, କଣ କହିବ ?

ଆରମ୍ଭ କଲା । କହିଲି, ଏଇ ଯୋଉ ସଂସ୍କାରର ସ୍ରୋତ ଚଳାଇଛନ୍ତି ଆପଣମାନେ, ଆଚ୍ଛା, ସେଥିର ଉଦ୍ଦେଶ୍ୟ କଣ ସମାଜର ସବୁ ମତ, ଶୃଙ୍ଖଳା ଆଉ ସଂଯମକୁ ଉଡ଼ାଦେବେ ? ହାତରେ ନାଲି ପତାକା ଧରି ରାସ୍ତାରେ ପ୍ରୋସେସନ କରିବେ, ଆଉ ତାରସ୍ୱରରେ ଗାଇ ବୁଲିବେ ଧର୍ମ ଯାଉ, ଈଶ୍ୱର ଯାଉ, ମାନ ଯାଉ—ଯାଉ—ଯାଉ ସବୁ ରସାତଳକୁ । ଖାଲି ହାତରେ ରହୁ ରକ୍ତପତାକା, ମୁଣ୍ଡ ଉପରେ ଲଙ୍କାତାରା, ଆଉ ଆଖିରେ ଜଳୁ ବିଦ୍ରୋହର ମଶାଲ !

ମିଶ୍ରେ ଘାବ୍ଡ଼ଗଲେ । ତାଙ୍କ ଭୂମିକାର ଯାହା ବାହାରିଲା, ତାର ସାର ମର୍ମ ଏଇ ଯେ, ମୁଁ କଣ ପାଗଳ ହୋଇଗଲି ନା କଣ ?

ଦଲିଲ୍-ଦସ୍ତାବିଜ ତିଆରି ଥିଲା ପାଖରେ । ତହିଁର ଶେଷ କବିତା ଖଣ୍ଡିକ ବଢ଼ାଇଦେଲି ମିଶ୍ରଙ୍କ ହାତକୁ ।

ମିଶ୍ରେ ଥରେ ଖାଲି ଆଖି ବୁଲାଇଗଲେ । ତା ପରେ ସେ ଖଣ୍ଡିକ ତଳକୁ ଫୋପାଡ଼ିଦେଇ କହିଲେ—ତମେ ବି ପାଗଳ । ଏ ସବୁ ଲେଖା ପଢ଼ୁଛି କଏ ହୋ ! ପଢ଼ିଲେ ବି ତାକୁ seriously ନେବ କଏ ? ଏ ଖାଲି ପିଲ୍-ଖେଳ ନା ଆଉ କଣ ! ସଂସ୍କାର କରୁଚୁଁ ଆମେ (ମିଶ୍ରେ ବାରଦଣ୍ଡରେ ଗୁଞ୍ଜି ଥିବା ଡାହାଣ ହାତରେ ତର୍ଜନୀ ନିଜର ଫୁଲ ଗୁଞ୍ଜି ଆଡ଼କୁ ନିର୍ଦ୍ଦେଶ କଲେ) ଆଉ ଆମେ ଜାଣୁ ନା ଭିତର କଥାଟା, ଜାଣିଲେ କାଲିକା ପିଲା ଏଇ ଲେଖକ ତରୁଣ ପଞ୍ଚକ ! ତା ପରେ ସେ ଅତି ତାଚ୍ଛଲ୍ୟସୂଚକ "ହଃ-ହଃ" ଶବ୍ଦଟାଏ କଲେ ।

ବୁଝିଲି, ମଣିଷର ଅନ୍ତରମଥିତ ଆଶା-ଆକାଙ୍କ୍ଷା ସ୍ୱପ୍ନକୁ ଖାଲି ସମାଜ-ସନ୍ତାରେ ପକାଇ ପେଷି ଦେଉନାହାଁ ଯେ, ସମାଜ ସଂସ୍କାରକମାନେ ବି ସେ ଢଙ୍ଗରେ କିଛି କମ୍ ଯାଆନ୍ତି ନି ।

କମ୍ବା—( ହଠାତ୍ ମନ ଭିତରେ ଗୁଞ୍ଜିକନା ଗୋଟାଏ ସନ୍ଦେହ ମୁଣ୍ଡ ଟେକିଦେଲା )—ହୁଏ ତ ରଘୁ କଥାଟିକୁ ଠିକ୍ ଠିକ୍ ଲେଖିପାରିନି । କଏ କଣ କରୁଛି, ତା ସେ ନିଜେ ହୁଏତ ଜାଣେ ନା । ବିଷଜ୍ୱାଳାରେ ଉହଳ ବିକଳ ହେଉଥିବା ଲୋକ ଯେପରି ଖଟରେ ନରମ ବିଛଣାରେ ନ ଶୋଇ ଖଟ ପାହ୍ୟାରେ କାତ୍ତେଇ କଣ୍ଟିକ୍ତି ହୋଇ ନିଜର ଦେହର ବ୍ୟଥା ଓ ଜ୍ୱାଳା ବଢ଼ାଏ, ରଘୁର ଅବସ୍ଥା ହୁଏ ତ ସେହିପରି କମ୍ବା ତା ଠାରୁ ବି ଅଳୀକ, ଅବାସ୍ତବ, ଅଜୀର୍ଣ୍ଣ ରୋଗଗ୍ରସ୍ତ ।

ଅସଲ କଥାଟା ହିଁ ବାଦ ପଡ଼ିଗଲା ଦେଖୁଛି । କହୁଥିଲି ଯେ କହିବା କଥାଟା ଠିକ୍ ମନମାଫିକ୍ ଭାବରେ କହିବା ଆଦୌ ସହଜ ନୁହେଁ ।

ଅଚ୍ଛା, ଆପଣ ତ ସବୁ ପଢ଼ିଲେ, ଏକ୍ଷଣି କହନ୍ତୁ ତ ଭଲା ଦେଖି ମୋର କହିବା କଥାଟା କଣ ? କଦାପି ପାରିବେ ନି କହି, ଯଦି ମୋ ଆଡ଼ୁ ଟିକିଏ ଅଧେ ସାହାଯ୍ୟ ନ ପାଆନ୍ତି ।

କଥାଟା ହେଉଛି ଏଇଆ । ରଘୁ କବିତା ଲେଖେ—ମୁଁ ବି କବିତା ଲେଖେଁ । ସେ ଲେଖେ ତା ଖିଆଲରେ, ମୁଁ ଲେଖେ ମୋ ଖିଆଲରେ—କଷ୍ଟ ପଡ଼େ ପଢ଼ିବାବାଲାଙ୍କୁ । ରଘୁ ଖଣ୍ଡିକ ପଢ଼ିସାରି ସେମାନେ ମନେ ମନେ ଗୋଟାଏ ଠିକଣା କରି ନିଅନ୍ତି ଯେ, ଇମିତିକା ଲେଖିଲେ ସ୍ପଷ୍ଟ ଅର୍ଥ ଇମିତିକା ବୋଲି ବୁଝିବାକୁ ହେବ (ହୁଏ ତ ରଘୁର ନିଜ ପାଖରେ ତାର ଅର୍ଥ ଅନ୍ୟ ପ୍ରକାର

ହୋଇପାରେ ।) ତା ପରେ ଧରନ୍ତୁ ମୋ ଖଣ୍ଡନ । ପଡନ୍ତୁ, ଆଉ ପଦେ ପଦେ କଚଡ଼ା ଖାଆନ୍ତୁ । ମୋ ଲେଖାରେ ହୁଏ ତ ରଘୁ ଉକ ଚ୍ଛୁପ୍ସାବାଦ, ମାୟାବାଦ ନାହିଁ । ବନ୍ଦୀ, ବଞ୍ଚିତ, ଲାଞ୍ଛିତଙ୍କର ବଳାପ ଅଭିଶାପ ନାହିଁ, ପିଷ୍ଟ-ଦଳିତ ବୁଭୁକ୍ଷିତଙ୍କର ଦଙ୍ଗାହାଙ୍ଗାମ, ଲଞ୍ଜାତାଗ, ରୁଦ୍ରଙ୍କ ମଶାଲ ଇତ୍ୟାଦି କଛି ନାହିଁ । ସାଦା ସିଧା କଥା, ଖୋଲା ଖୋଲା ଭାବ, ସିଧା ଜନିଷକୁ ସିଧା ଭାବରେ ଦେଖିବାର ଓ ଦାମ କଷିବାର ଇଚ୍ଛା । ବଡ଼ ଅଡ଼ୁଆଲାଗେ ତାଙ୍କୁ । କହୋ, ସିଧା କଥାକୁ ଯେବେ ସିଧା ସରପଟ ଲେଖିପିବ, ତେବେ ସେଇଟା ଗୋଟାଏ କ କବତା ହେଲା ? ଆଉ ସେ ଜାତିଆ ଲେଖକ ପୁଣି କ ଲେଖକ ଗୋଟାଏ ?

କନ୍ତୁ ଭୁଲବାର ଆଉ ଭୁଲାଇ ରଖିବାର ଦନ ଯେ ଗଳି-ଗଲାଣି । ଖାଲି କଥାର ଗୋଲକଧନ୍ଦାରେ ପକାଇ ମନକୁ ଆଖି ଠାରବାର ଦନ ଆଉ ନାହିଁ । ବଡ଼ଆ ଗାନ୍ଧୀଙ୍କର ଶ୍ରମସହିଷ୍ଣୁତା ଓ ସାଧନା ଆମେ ଆୟତ୍ତ କରବୁ ନି; କନ୍ତୁ ହଲଉଡ଼ର ପ୍ରେମଲୀଳା ପ୍ରତି ଆମର ଯେଉଁ ଆନ୍ତରକତା, ଲାଳସା, ସେଟାକୁ ଆମର ନାଯ୍ୟ "ହୃଦୟ-ଅଭିଳାଷ" ବୋଲ ମାନବାକୁ ହେବ । ସେଥିରେ ଯଦ ସମାଜ-ଶୃଙ୍ଖଳା ବା ସମାଜ-ସଂସ୍କାରକ ବାଧାଦଏ, ତେବେ ଆମେ ରୁଷିଆର ଦୋହାଇ ଦେଇ କହିବୁଁ — "ହଟାଓ ଏ ସବୁ ମାନ୍ଧାତା-ଅମଳିଆ କୁସଂସ୍କାର !" ଯେଉଁ ପେଷଣ ଆଉ ଶୋଷଣ ଆଉ ବଳାସ ନମଜ୍ଜନ ଫଳରେ ଫରାସୀ ବପ୍ଳବ ବା ରୁଷିଆର ସାମ୍ୟବାଦ ସମ୍ଭବ ହୋଇ ପାରିଲା, ତାର କାଣିଚାଏ ଆମ ଦେଶରେ ଥାଉ ବା ନ ଥାଉ ଆମେ ସେଇ ସେଇ ଦଳରେ ଯାଇଁ ମିଶିପିବୁ ।

କାଳ୍ପନିକ ଦୁଃଖରେ ବା କପୋଳକଳ୍ପିତ ସମ୍ଭାବନାରେ ନିଜକୁ ଅଭିଭୂତ କରି ପକାଇବା ବା ସେପରି ଭାବିବା ବୁଦ୍ଧିଭ୍ରଂଶ ଲକ୍ଷଣ । ନିଜର ପ୍ରକୃତ ପରିସ୍ଥିତିକୁ ଯଥାଯଥ ଭାବରେ ବିଶ୍ଳେଷଣ କରି ଭବିଷ୍ୟତ କର୍ମପନ୍ଥା ଅବଧାରଣା କରିବା ହିଁ ପ୍ରାଜ୍ଞର କର୍ତ୍ତବ୍ୟ । ବାହାରର ଉପରଠାଉରିଆ କାର୍ଯ୍ୟ କାରଣ ନିର୍ଦ୍ଦେଶରେ ସନ୍ତୁଷ୍ଟ ରହି ଅପରୀକ୍ଷିତ କାର୍ଯ୍ୟପନ୍ଥାକୁ ନିର୍ବିଚାରରେ ଅନୁସରଣ କରିବା କଦାପି କାହାରି କଲ୍ୟାଣକର ହୋଇ ନ ପାରେ ।

ଜଗତର ସବୁଆଡ଼େ ଆଜି ତାରୁଣ୍ୟର ପ୍ରବଳ ଶକ୍ତି ଉଦ୍‌ବୁଦ୍ଧ ହୋଇଅଛି । ପ୍ରତି ଦେଶରେ ତାର ବିକାଶ ଘଟୁଅଛି, ଅଗ୍ରଗତି ଲାଗିଛି । ଆମ ଦେଶରେ ଯେ ତାର ସୂଚନା ଦେଖାଯିବ, ସେଥିରେ ବିସ୍ମିତ ବା ବିଚଳିତ ହେବାର କିଛି ନାହିଁ । କିନ୍ତୁ ଖାଲି ବ୍ରିଟିଶ ରାଜଶକ୍ତିର ଭାବି ଅଧୋଗମନର ସ୍ୱପ୍ନ ଦେଖିଲେ ବା ରୁଷର ବିପ୍ଳବୀ ମନୋବୃତ୍ତିର ଅକ୍ଷମ ଝଙ୍କାର କାବ୍ୟକବିତା ବା ଗଳ୍ପ ଭିତରେ ରୂପାୟିତ କଲେ ଆମର ତଥା ଆମ ଦେଶର ବିରାଟ ଅଭାବ-ଗୁଡ଼ିକ ପୂରଣ ହୋଇ ପାରିବ କି ?

"ଯୁବଶକ୍ତି" କଥାଟା ଶୁଣିବାକୁ ବେଶ ! ମନଟା କୁଣ୍ଢେମୋଟ ହୋଇଗଲା ପରି ଜଣାପଡ଼େ । କିନ୍ତୁ ସେ ଶକ୍ତିର ମାଲିକମାନେ କାହାନ୍ତି ? ସେମାନେ ଅଟେଇ ଅଛି ନିଜ ହାତରେ ନିଜର ଭାଗ୍ୟ ମୀମାଂସାର ଭାର ନେଇ ନାହାନ୍ତି କାହିଁକି ? ଆମେ କାହିଁକି ଏଭଳି ଅକ୍ଷମ ବିଳାପ ଶୁଣିପାରୁଚୁ ଯେ, "ମୁରବୀମାନେ ଧରି ବାନ୍ଧି ତରୁଣମାନଙ୍କୁ ବଶ କରାଇ ଦେଉଛନ୍ତି ।" ବିଚାରି ତରୁଣ ପ୍ରବଳ ଯୁବଶକ୍ତିରେ ଶକ୍ତିମାନ ତରୁଣ—ଆଖି କାନ, ହାତ ଗୋଡ଼, ବୁଦ୍ଧି

ବଦ୍ୟା, ଏପରି କି ଯୌନନିର୍ବାଚନ କ୍ଷେତ୍ରେ ଥିବା ସତ୍ତ୍ୱେ ମେଣ୍ଢା ପରି ପଲର ଅନୁଗାମୀ ହେଉଛୁ କାହିଁକି ? କାହିଁକି ଏପରି ହେଉଛୁ ?

ହେଉଛି, ଆମ ଭିତରେ ଯଥାର୍ଥ ଯୁବଶକ୍ତି ଆସିନାହିଁ ବୋଲି । ହେଉଛି, ଆମେ ଖାଲି ଗୁଡ଼ାଏ ଗଳାବାଜି ଆଉ ଗୁଡ଼ାଏ ପୋଥି ନଜିର ଉପରେ ଆମର ସମସ୍ତ ଆଶାଭରସା ଥୋଇଛୁ ବୋଲି ।

ରାଷ୍ଟ୍ରମୁକ୍ତି କଥା, ପରାଧୀନତା କଥା, ପେଟ ବିକଳ କଥା ଆଉ ପ୍ରାଣ ଭିତରକୁ ଆଣିବେ କି ? ସେଥିକି ପଞ୍ଚ ପଞ୍ଚ ଲୋକ ଲାଗିଛନ୍ତି । କିନ୍ତୁ ଅଳ୍ପ ଲୋକ ଗୋଟିଏ ହଓଠିରୁ ବେଶି ହେଉ ନାହାନ୍ତି ବୋଲି କୋଟିଏ ଓଡ଼ିଆ କିଛି କରିପାରୁ ନାହାନ୍ତି କି ୩୫ କୋଟି ଭାରତବାସୀ କିଛି କରିପାରୁ ନାହାନ୍ତି । ସମସ୍ତେ ରହିଲେ ଫାଙ୍କି ଉପରେ, ନକଲ ଉପରେ, ଲୋକଦେଖାଣି ଉପରେ, ବୋଝ କାହାକୁ ଟେକିବାକୁ ମାଧ୍ୟମ ଦେଖାନାହିଁ ।

କଥାଟା କାନ୍ଦୁଶୁଣାଗଲେ ଯଥେଷ୍ଟ ନାହିଁ । ମତକୁ ମୋଲାୟେମ କରି କହିବା ରାଷ୍ଟ୍ରନୈତିକର କାମ ହୋଇପାରେ, ଲେଖକର ବା ଆଦର୍ଶ ସାଧକର କଦାପି ନୁହେଁ । ଯୁବଶକ୍ତି ଉପରେ ଆସ୍ଥା ନାହିଁ କାହାର ? କିନ୍ତୁ ସେ ଶକ୍ତି ଆତ୍ମସ୍ଥ ହୋଇ ନିଜର ଚିନ୍ତାଶକ୍ତିକୁ ଉଦ୍ଦିଷ୍ଟ ପଥରେ ଚଳାଇ ନିଜେ ଆଗେଇ ପାରିଲେ, ତେବେ ଯାଇ ତା ଉପରେ ଭରସା କରାଯାଇପାରେ । ସ୍ୱପ୍ନବିଳାସୀ ବା କାଳ୍ପନିକ ବ୍ୟଥାତୁର ତରୁଣର ସ୍ଥାନ ଜଗତର ଅନ୍ୟ ଅନ୍ୟ ଦେଶରେ ଆଜି ନାହିଁ, ଏ ଦେଶରେ ମଧ୍ୟ ନ ରହିବା ହିଁ ଉଚିତ ।

ତରୁଣର ଚେତନା ଚଞ୍ଚଳ; ତାର ଜୀବନୀଶକ୍ତି ପ୍ରଚୁର । ସେ ଯଦି ଆଜି ଅବଚେତନର ଲୌହବନ୍ଧନରେ ନିଜକୁ ଇଚ୍ଛାକରି

ବାନ୍ଧିରଖେ, ପ୍ରବଳ ପ୍ରଥମ ଶତ୍ରୁର ଉନ୍ମାଦନାରେ ନିଜର ପ୍ରଧାନ କର୍ତ୍ତବ୍ୟରୁ ବିଚ୍ୟୁତ ହୁଏ, ତେବେ ଆକ୍ଷେପର ସୀମା ପରିସୀମା ରହିବ ନାହିଁ । ଶକ୍ତିର ଲକ୍ଷଣ କର୍ମ, ସାଧନା ତାର ସିଦ୍ଧିର ସୂଚନା । ବିଳାପ ବା ଅଭିଶାପର ମୁଖରତାକୁ ବଳି ଯେଉଁଦିନ ଯୁବଶକ୍ତିର କର୍ମରତ ଅଧିକତର ମୁଖର ହୋଇ ଉଠିବ, ସେ ଦିନ ଯୁବଶକ୍ତି ନିଜର ଅଗ୍ରଗତି ପାଇଁ ମୁରବୀମାନଙ୍କ ମୁହଁକୁ ଅନାଇ ରହିବ ନାହିଁ— ନିଜେ ହିଁ ହେବ ନିଜର ଭାଗ୍ୟବିଧାତା ।

—*—

# ସନ୍ତାନ

ମୂଳଲେଖା—ମୋପାସାଁ

ଅନୁବାଦକ—ଶ୍ରୀ ଧନେଶ୍ୱର ସାମଲ

ସ୍ତ୍ରୀ ମରିଗଲା—ଗୋଟିଏ ସନ୍ତାନ ଛାଡ଼ି ।

ଲେମୋନିଏର୍ ଆଉ ବିବାହ ହେଲା ନି । ବିବାହ ପରେ ସେ ତାର ସ୍ତ୍ରୀକୁ ପ୍ରାଣ ଦେଇ ଭଲ ପାଉଥିଲା । ବଡ଼ ମଧୁର, ପ୍ରଗାଢ଼ ସେ ପ୍ରେମ, ସେ ଯେମିତି ସ୍ତ୍ରୀ-ପ୍ରେମର ମୂର୍ତ୍ତୀ । ଜୀବନରେ କେବେ ତାର ପଦସ୍ଖଳନ ହୋଇ ନି । ଘରି ସହଜ ସରଳ, ଖାସା ମଣିଷ ସେ । ମନରେ ହିଂସା, ଦ୍ୱେଷ କିଛି ନାହିଁ—ସମସ୍ତଙ୍କ ଉପରେ ତା'ର ଗଭୀର ବିଶ୍ୱାସ ।

ଗାଁର ଗୋଟିଏ ଗରିବ କନ୍ୟାକୁ ଭଲପାଇ ବିବାହ କରିଥିଲା ସେ । ବେଶ ଦୁ'ପଇସା ରୋଜଗାର କରୁଥିଲା—ଚଉପଣି କପଡ଼ା ବ୍ୟବସାୟରୁ ।

ସ୍ତ୍ରୀ ମଧ ସୁଖୀ କରିଥିଲା ତାକୁ । ସ୍ତ୍ରୀ ଥିଲା ତା'ର ସର୍ବସ୍ୱ । ତା ମୁହଁକୁ ଚାହିଁଲେ ସେ ଆଖି ଫେରାଇ ଆଣି ପାରୁ ନ ଥିଲା । ବେଳେବେଳେ କେତେ କଣ ଭୁଲ କରି ପକାଉଥିଲା ମଧ । ଛୋଟପିଲାଙ୍କ ଭଳି କହି ପକାଉଥିଲା—"ଦେଖୁଚ, ଭଲ ପାଇବା ଲାଗି ମୋ ମୁଣ୍ଡଟା ବି ଠିକ୍ ନାହିଁ ।"

ଶାନ୍ତ-ଅଳସ ଆଖିରେ ଗୃହିଁ ହସେ କନ୍ୟାଟି । ତା’ପରେ ଅନ୍ୟଆଡ଼େ ମୁହଁ ବୁଲେଇ ନିଏ—ସ୍ୱାମୀର ଏଇ ଅର୍ଚ୍ଚନାରେ ବଡ଼ ଅପ୍ରସ୍ତୁତ ହୋଇପଡ଼େ ସେ । ସେ କଥାର ଖିଅ ବଦଳାଇବାକୁ ଚେଷ୍ଟାକରେ—କିନ୍ତୁ ସ୍ୱାମୀ ଟେବୁଲ ତଳେ ତା’ର କମଳ-କୋମଳ ହାତ ଧରି କାନେ କାନେ ଚୁପ୍ ଚୁପ୍ କହେ,—“ଜୀନ୍ ମୋର, ମାଣିକ ମୋର, ପ୍ରିୟା ମୋର !”

ବେଳେବେଳେ ଧୈର୍ଯ୍ୟ ହରାଉଥିଲା କନ୍ୟାଟି । ସେ କହୁଥିଲା, “ଛାଡ ମ ଛାଡ଼, ପାଗଳାମି କରିବ ପଛେ । ଗୃଲ ଖାଇବ, ଆଜି ମତେ ଖାଇବାକୁ ଦେବ ।”

ଦୀର୍ଘଶ୍ୱାସ ଛାଡ଼ ଲୋକଟି ଗାଲେ ରୁଟି ପୂରେଇ ଆନନ୍ଦରେ ଗେ୍ବେଇବାକୁ ଲଗେ ।

ପାଞ୍ଚ ବର୍ଷ ଯାଏ ସେମାନଙ୍କର କିଛି ପିଲାପିଲି ହୁଏ ନି । ତା’ପରେ ହଠାତ୍ ଦିନେ କନ୍ୟାଟି ତାକୁ କହେ ଯେ, ତାର କ’ଣ ପିଲାପିଲି ହେବ । ଆଉ ବେଶି ଦିନ ନାହିଁ । ଆନନ୍ଦରେ ପାଗଳ ହେଇଉଠେ ସେ । ଯୁା ପରେ ମୁହୂର୍ତ୍ତିକ ପାଇଁ ସୁଦ୍ଧା ସେ ତା ସ୍ତ୍ରୀକୁ ଆଖି ଆଗରୁ ଅନ୍ତର କରେ ନି । ଶେଷରେ ଯେଉଁ ବୁଢ଼ୀ ଧାଈ ତାକୁ ମଣିଷ କରିଥିଲା ଗାଳିମନ୍ଦ ଦେଇ, ତାକୁ ଜବରଦସ୍ତି ଘରୁ ବାହାର କରିଦିଏ—ପବନ ଖାଇ ଆସିବାକୁ ।

ସହରର ପ୍ରିଫେକ୍‌ଟଙ୍କ ସେକ୍ରେଟାରୀ—ଏକ ନବଯୁଆନ ଭେଣ୍ଡିଆ ଟୋକା ସଙ୍ଗେ ତା’ର ଘର ଦୋସ୍ତି । ବାଲ୍ୟକାଳରୁ ତା’ ସ୍ତ୍ରୀ ସହିତ ଜଣାଶୁଣା ଥିଲା ସେହି ଭେଣ୍ଡିଆଟିର । ହପ୍ତାକେ ତିନି ଦିନ ସେ ଲେମୋନିୟାଙ୍କ ସହ ‘ଡିନର’ ଖାଏ । ତା’ର ସ୍ତ୍ରୀ

ପାଇଁ ଫୁଲ ଆଣେ ଏବଂ ସମୟେ ସମୟେ ଥିଏଟର, ସିନେମାରେ ତାଙ୍କ ପାଇଁ 'ବକ୍ସ' ଭଡ଼ା ନିଏ । ସ୍ତ୍ରୀ ଆଡ଼କୁ ଚାହିଁ ମନଖୋଲି କହେ—"ଲେମୋନିୟେ, ସଂସାରରେ ତୁମ ପରି ସ୍ତ୍ରୀ ଏବଂ ତାଙ୍କ ପରି ବନ୍ଧୁ ଥିଲେ ଆଉ ଚିନ୍ତା କଣ ?"

ସନ୍ତାନ ପ୍ରସବ କରି ମା' ପ୍ରସୂତିରେ ମଲା । ସେହି ଗଭୀର ଦୁଃଖ ଧକ୍କାରେ ସେ ମରିବାକୁ ଉଦ୍ୟତ ହୋଇ ଯାଇଥିଲା, କିନ୍ତୁ କୁଆଁଟାର ମୁହଁକୁ ଚାହିଁ ସ୍ଥିର ପଥର ହେଲା । ସେଗା-କାନ୍ଦୁଣିଆ ପିଲାଟା ।

ତାକୁ ସେ ଭଲ ପାଇଲା । ଖାଲି ସେ ଭଲପାଇବା । କାରଣ ଗଭୀର ଶୋକରେ ତା'ର ଜନ୍ମ । ସେ ଭଲପାଇବା ମରଣସ୍ମୃତିରେ ବାଧିତ—ସେ ଭଲ ପାଇବାରେ ମୃତପତ୍ନୀ ପ୍ରତି ତା'ର ଯେଉଁ ସ୍ନେହ ଥିଲା, ତାହା ପ୍ରକାଶିତ ହେଲା । ସେ ଦେଖିଲା—ତାର ପତ୍ନୀର ରକ୍ତ-ମାଂସରେ ଗଢ଼ା ଏଇ ଶିଶୁ, ପତ୍ନୀର ପ୍ରାଣ ଯେପରି ଅନ୍ୟ ଏକ ଶରୀରରେ ସଞ୍ଚାରିତ ହୋଇଛି । ତା'ର ମୃତ୍ୟୁ ଘଟିଛି—ଏ ଯେପରି ବଞ୍ଚି ରହେ—ଏଇଥିପାଇଁ । ସେ ହାତିଶୟରେ ଶିଶୁଟିକୁ ଚୁମାରେ ପୋତିପକାଏ ତାର ବାପ, କିନ୍ତୁ ଏଇ ସନ୍ତାନ ଲାଗି ତ ତା'ର ମୃତ୍ୟୁ ! ତା' ପ୍ରାଣର ବଦଳରେ ତ ଯାଉଛି ପ୍ରାଣ । ଏହା ଭାବି ଭାବି ଦୋଳା (Cradle) ରେ ଶୁଆଇ ଦେଇ ଶିଶୁଟିକୁ ଚାହିଁରହେ ଏକ ଦୃଷ୍ଟିରେ । ଘଣ୍ଟା ଘଣ୍ଟା ଧରି ଏହିପରି ତାରି ଆଡ଼କୁ ଚାହିଁ ବସି ସେ ହଜାର ରକମର ସୁଖ-ଦୁଃଖର ସ୍ୱପ୍ନ ଦେଖେ । ତା'ପରେ ଘୁମନ୍ତ ଶିଶୁ ଉପରକୁ ଝୁଙ୍କିପଡ଼େ ସେ । ଆଉ କେତେବେଳେ ତା'ର ଚକ୍ଷୁର ଜଳ ଯେପରି ବାଧା ମାନେ ନା ।

ଶିଶୁ ବଡ଼ ହେବାକୁ ଲାଗେ । ଘଣ୍ଟାଟିଏ ସୁଦ୍ଧା ତାକୁ ଛାଡ଼ି ତାର ବାପ ବାହାରେ ରହିପାରେ ନା । ସବୁବେଳେ ପାଖେ ପାଖେ ରହି ତାକୁ ବୁଲେଇ ନିଏ, ଗାଧେଇ ଦିଏ, ଖୋଇପେଇ ଦିଏ ଏବଂ ଲୁଗା-ପଟା ପିନ୍ଧେଇ ଦିଏ । ସବୁ କାମ ନିଜେ କରେ । ପିଲାଟା ଟିକିଏ କାନ୍ଦିଲେ, ତାକୁ ଚୁମା ଦେଇ କାଖେଇ ବୁଲେ । ଧୁ-ପାଞ୍ଚ କରେ । ଲେମୋନିସ୍ୱେ ଖୁସିରେ ଫାଟି ପଡ଼ି ଗୁଏଁ ଗୁଏଁ କହିଉଠେ —"ଧାର ଭଲ ପିଲା—ନା !" ତା ପରେ ତାକୁ ଛାତିରେ ଚାପି ଧରି ତା'ପେଟରେ ଧୁଡ଼ୁ ଧୁଡ଼ୁ ଶବ୍ଦ କରେ ।

କେବଳ ଧାଈବୁଢ଼ୀ ଛୁଆଟାକୁ ଦେଖିପାରେ ନା । ସେ ରଡ଼ନିଡ଼ ହୋଇ କହେ—"ଏମିତି ଗେହ୍ଲା କରି କଣ ଛୁଆଟାକୁ ମଣିଷ କରିବୁ ନା ବାନ୍ଦର ?"

ବର୍ଷ ପରେ ବର୍ଷ ବିତିଯାଏ । ଛୁଆଟାକୁ ନ'ବର୍ଷ ବୟସ ହୁଏ । ତେବେ ବି ପଢ଼ିଲେଖି ଶିଖେ ନା । ଯାହା ଖୁସି, ତା' କରେ । ସ୍ୱେଚ୍ଛାଚାରୀ ଏବଂ ବଦମାସ୍ ହୋଇଉଠେ ସେ । ସବୁ-ବେଳେ ତା ଜିଦ୍ ସାମନାରେ ତା' ବାପକୁ ହାର ମାନିବାକୁ ପଡ଼େ ।

ତା'ର ମନଲାଖି ଖେଳନା, ଲଜେନ୍‌ସ୍ ଓ କେକ୍ ଇତ୍ୟାଦି କିଣିଦିଏ ଲେମୋନିସ୍ୱେ । ଏସବୁ ଦେଖି କିନ୍ତୁ ବୁଢ଼ୀର ହାଡ଼ ଜଳେ । ସେ କହେ—"ଲାଜ ନାହିଁ ତତେ ! ଛୁଆଟାକୁ ଏକଦମ ଗେହ୍ଲା କରି ବିଗାଡ଼ି ଦେଇ ସାରିଲୁଣି ! କିନ୍ତୁ ଦେଖ୍, ଏ ସବୁ ଆଉ ବେଶିଦିନ ଚାଲିବ ନି—ମୁଁ କହି ରଖୁଛି !"

ଲେମୋନାଏ୍ସୁ ଟିକଏ ହସି କହେ, "କ'ଣ କରିବ, କୁହ ତ ? ଘର ଭଲପାଏ ତାକୁ—ଧମ୍ଭାଳି ପାରେ ନା । ଅଭ୍ୟାସ କର ସବୁ ସହ୍ୟ ନେବାକୁ ହେବ ।"

× × ×

ସେଁ ସେଁକା ପୁଅଟି । ଡାକ୍ତର କହିଲେ— ରକ୍ତହୀନତା । ବ୍ୟବସ୍ଥା ଦେଲେ—ଲୌହଘଟିତ ଔଷଧ ଏବଂ ମାଂସର 'ସୁପ୍' । ଛୁଆଟା କିନ୍ତୁ 'କେକ୍' ବ୍ୟତୀତ ଆଉ କିଛି ଖାଏ ନା । ବାପ ବାଧ୍ୟ କରି ସିମ୍‌ପଫ୍ ଓ ଚକୋଲେଟ୍ ଜବରଦସ୍ତି ଖୁଆଏ ।

ଦିନେ ରାତିରେ ସମସ୍ତେ ଖାଇ ବସିଛନ୍ତି । ଧାଈ 'ସୁପ' ଧରି ହାଜର ହେଲା । ମୁଖରେ ଭଙ୍ଗୀ ବେଶ ଗ୍ମୁଷଣ ତା'ର । ଶାସନ ଏବଂ ଜିଦ୍ ମିଶ୍ରିତ ଏପରି କଡ଼ା ଭାବ ସାଧାରଣତଃ ତା'ର କେବେ ଦେଖାଯାଏ ନା । ଡ଼ାକୁଣୀ ଖୋଲି ଟାନରେ ଗୁମୁଚ ବୁଡ଼େଇ ସେ କହିଲା, "ଏମିତିଆ ସୁପ୍ ମୁଁ କେବେ ରାନ୍ଧି ନ ଥିଲି । ଏଥର ଏଥିରୁ ପୁଅକୁ ନିଶ୍ଚେ ଟିକେ ଚାଖିବାକୁ ପଡ଼ିବ ।"

ଭୟରେ ଲେମୋନାଏ୍ସୁ ମୁଣ୍ଡ ପୋତିଦେଲା । ସେ ବୁଝି ପାରିଲା ଯେ ଗୋଟାଏ ଝଡ଼ ଯେମିତି ଘନେଇ ଆସୁଛି ।

ବାପ-ପ୍ଲେଟ୍ ନିଜ ହାତରେ ଭରି ଧାଈବୁଢ଼ୀ ତା' ସାମନାରେ ରଖିଦେଲା । 'ସୁପ' ଚାଖି ବାପ କହିଲା, "ବାଃ ! ସତେ ତ, ବଡ଼ ଚମତ୍କାର ହୋଇଛି ।"

ଧାଈ ତା'ପରେ ହଠାତ୍ ପୁଅ-ପ୍ଲେଟ୍‌ରେ ଗୁମୁଚ ହୋଇ ତାକି ଟିକଏ ଦୂରେଇ ଯାଇ ଲକ୍ଷ୍ୟ କଲା—ସେ କ'ଣ କରୁଛି ।

ସେ ତାକୁ ଶୁଙ୍ଘି ମୁଖ ବିକୃତ କରି ପ୍ଲେଟଟାକୁ ଠେଲିଦେଲା ଦୂରକୁ । ଏହା ଦେଖି ବୁଢ଼ୀର ମୁହଁ ହଠାତ୍ ରାଗରେ ବିବର୍ଣ୍ଣ ହୋଇଗଲା । ସେ ଚଟାପଟ୍ ଦୌଡ଼ିଆସି ତା' ପାଟିରେ ଗୁମୁରେ ଖୋଳ ଗେଲେଇ ପକେଇଲା ।

ଅଣନାଶ୍ୱାମୀ ନେଳ, କାଶି, ଛିଙ୍କି, ବାନ୍ତି କରି, ଗୋଡ଼ହାତ ଛାଟି, ଛଟାଗୁଡ଼ି, ଗିଲାସଟାଏ ଧରି ସେ ଫୋପାଡ଼ିଲା ଧାଈ ଉପରକୁ । ସେଟା ସିଧା ଯାଇ ବାଜିଲା ତା' ପେଟରେ । ତା ପରେ ଧାଈ ରାଗି ତମତମ ହୋଇ ଏକାଥରେ ଝପଟି ମାରି କାଖତଳେ ତା ମୁଣ୍ଡକୁ ଜାବୁଡ଼ି ଧରି, ଗୁମୁଗ୍ରୁ ଗୁମୁଗ୍ରୁ କରି ତା ପାଟିରେ ଖୋଳ ଗଳେଇ-ବାକୁ ଆରମ୍ଭ କଲା । ରାଗରେ ଏକେବାରେ ରଙ୍ଗା ପଡ଼ିଗଲା ଛୁଆଟାର ମୁହଁ । ସେ ଛଟିପିଟି ହେଇ ଛଟାଗୁଡ଼ିବାକୁ ଲାଗିଲା ।

ବାପ ପ୍ରଥମେ ଏ ସବୁ ଦେଖି ଏକେବାରେ କାବା ହୋଇଗଲା । ତାର ଗୋଡ଼ହାତ ଯେମିତି କି ଅବଶ, ଅଚଳ ହେଇଯାଇଥିଲା । କିନ୍ତୁ ତା ପରେ ହଠାତ୍ ସେ ପାଗଳଙ୍କ ଭଳି ଧଡ଼୍ କରି ଛୁଟିଗଲା ଧାଈ ପାଖକୁ । ତାକୁ ଧରି କହିଲା—"ଛୁଡ଼, ଛୁଡ଼ ! ଜାନୁଆର କେଉଁଠିକାର ! ନିକଲ ଏଠୁ !"

ଧାଈ ତାକୁ ଏକା ଝିଙ୍କା ଦେଇ ଠେଲିଦେଲା । ପିଠି ଉପରେ ତାର ବାଳଖଣ୍ଡିଆଟା ଅଲରା-ବଲରା ହେଇ ଧଟିପଡ଼ିଥାଏ । ଆଖି ଦି'ଟା ଜିକିରି ପରି ଡମା ଡମା ଦେଖାଯାଉଥାଏ । ଗଳା ଫଟେଇ ସେ ଗର୍ଜି ଉଠିଲା, "ତୋତେ କ'ଣ ଭୂତ ଲାଗିଚି, ନା କ'ଣ ?"

ସାଗ ଓ ଭୟରେ ବାଘର ଆପାଦମସ୍ତକ କମ୍ପିତ ହେଉଥାଏ । ବାରମ୍ବାର କହୁଥାଏ—"ମାଆ, ଜାନୁଆର କେଉଁଠିକାର ! ଗୁଡ଼ ! ନିକଳ ଏଠୁଁ ।"

ଯାଗଳୀଙ୍କ ଭଳି ତା'ଆଡ଼କୁ ବୁଲିପଡ଼ି, ମୁହାଁମୁହିଁଭାବେ ଥର ଥର ଗଳାରେ ବୃଦ୍ଧୀ କହିଲା, "ଓ, ଭାଇନ୍ତ, ମୋ ଉପରେ ଏମିତି ଯା-ଇଚ୍ଛା ତା' କରିବାର ଅଧିକାର ଅଛି ତମର । ହୁଁ ! ତା କଦାପି ସମ୍ଭବ ନୁହେଁ । କା' ପାଇଁ ଏମିତି କରିବାକୁ ଯାଉଛ— ଶୁଣେ ? ଏଇ ଜୁଆଁଟା ଲାଗି ? ଏ ତ ତମର ପୁଅ ନୁହେଁ ! ନା, ତମର ନୁହେଁ । ତମକୁ ଗୁଡ଼ି ଆଉ ସମସ୍ତେ ଏ କଥା ଜାଣନ୍ତି । ଯାହାକୁ ଇଚ୍ଛା ତାକୁ ପଚାରିପାର ।"

ରାଗରେ ଗରଗର ହୋଇ ଗର୍ଜୁଚି ସେ । ଗଳା ବନ୍ଦ ହୋଇ ଆସୁଚି ତାର । ହଠାତ୍ ଟିକଏ ରହିଯାଇ ସେ ବୁଲିଦେଲା ଲୋକଟାର ମୁହଁ ଆଡ଼କୁ ।

ପଥର ହୋଇ ଯାଇଚି ଶରୀର, ନାଲି ପଡ଼ିଯାଇଚି ମୁହଁ । ହାତ ଦି'ଟା ଶିଥିଳ ହୋଇ ଝୁଲିପଡ଼ିଚି ଦି' କଡ଼କୁ । ଗଭୀର ବ୍ୟଥାରେ କମ୍ପୁଚି ତାର ସ୍ୱର । ସେ କହିବାକୁ ଆରମ୍ଭ କଲା—"ତୁ କହୁଚୁ—ତୁ ଏସବୁ କ'ଣ କହୁଚୁ ତୁ ?"

ତା'ର ଏ ଭୀଷଣ ମୂର୍ତ୍ତି ଦେଖି ଧାଈ ଭୟରେ ଚୁପ୍ ହୋଇଗଲା । ସେ ଆଉ ପାଦେ ଆଗେଇ ଆସି କହିଲା, "ତୁ କହୁଚୁ ? ତୁ ! ଏସବୁ କ'ଣ କହୁଚୁ ତୁ ?"

ସ୍ଥିର ଶାନ୍ତକଣ୍ଠରେ ଧାଈ କହିଲା –"ଯା ଜାଣିଛ, ସମସ୍ତେ ଯାହା ଜାଣନ୍ତି—ସେଇଟା କହୁଛ ।" ଘାଉଲା ବାଘ ଭଳି ସେ ବୁଢ଼ୀକୁ ଚୁପି ଧରି ଫୋପାଡ଼ି ଦେବାକୁ ଚେଷ୍ଟାକଲା । କିନ୍ତୁ ହେଲେ କ'ଣ ହେଲା, ବୁଢ଼ୀର କ୍ଷମତା କିଛି କମ ନୁହେଁ । ସେ ତା ହାତରୁ ଖସି ଯାଇ ଠିଆହେଲା ଟେବଲ ଆର ପଟେ । ପୁଣି ଚିତ୍କାର କରି ଆରମ୍ଭ କଲା, "ଦେଖ୍ ଦେଖ୍ ଏ ମଣିଷଟାକୁ ! ଏଡ଼ିକି ଓଲ ! ଛୁଆଟାକୁ ଚାହିଁ ଦେଖ ତ ସେ କାହାର ପ୍ରତିମୂର୍ତ୍ତି ? ତା' ଆଖିକି ଚାହିଁ ଦେଖ ତ ! ଚାହଁ ତ ତା ନାକଟାକୁ ! ତମର ପରି ନା ? ତେବେ ଶୁଣ—ତମ ଛଡ଼ା ସମସ୍ତେ ଜାଣନ୍ତି ଏ କଥା ହଁ, ଆଉ ସମସ୍ତେ । ସହରରେ ଗୋଟାଏ ଗୁଜବ ଉଠିଛି ଏଇଥିପାଇଁ । ଦେଖ ମ, ଦେଖ ଏ ଲୋକଟାକୁ·· !"

ଦରଜା ଖୋଲି ବାହାରିଗଲା ଧାଈ । 'ସୁପ୍' ପ୍ଲେଟ୍ ଆଗରେ ରଖି କାବା ହୋଇ ବସିଛି ଜାନ୍ 'ପୁଅ' ।

× × ×

ଘଣ୍ଟାଏ ଖଣ୍ଡେ ପରେ ଧାଈ ଧୀରେ ଧୀରେ ଫେରିଆସିଲା— ଘଟଣାଟା କେତେଦୂର ଗଲା ଦେଖିବାକୁ ।

ଦେଖିଲା, ଛୁଆଟା ସବୁ 'କେକ୍' ଖାଇ ସାରି ଚାଟିଆଏ ସର ଶେଷ କରିନ୍ତି । ତା ପରେ ବୋତଲେ ସିରପ ପକେଇ ଦେଇ ସୁପ୍ ଚାମଚ ଧରି 'ଜ୍ୟାମ' ବୋତଲରେ ଅଜାଡ଼ିବାକୁ ଆରମ୍ଭ କରୁଛି ।

ବାପ ସେତ୍ତ, ଚାଲିଯାଇଛି । ବୁଢ଼ୀ ଛୁଆଟାକୁ ଚୁମା ଦେଇ, କାଖେଇ ନେଇ, ତା ଘରେ ଶୁଆଇଦେଲା ।

ଭୋଜନାଳୟକୁ ଫେରିଆସିଲା ସେ । ଟେବୁଲ ସଫାକରି ସବୁ ଜିନିଷ ସୋଗ୍ଛମୋଗ୍ଛ କରି ରଖିଲା । ସବୁବେଳେ କିନ୍ତୁ ତା' ମନରେ ଉଙ୍କି ମାରୁଥାଏ ଏକ ବିରାଟ ଅଶାନ୍ତି ।

ଟିକେ ହେଲେ ସ୍ୱର-ଶବ୍ଦ ନାହିଁ । ଏକାବାରେ ଶ୍ମଶାନ୍ । ସେ ମୁନିବଙ୍କ ଦରଜା ପାଖକୁ ଯାଇ, କାନ ପାରିଲା । ଉଁ କି ଚୁଁ ନାହିଁ । କବାଟ ଫାଙ୍କରେ ସେ ଚୁହିଁ ଦେଖିଲା—ଲୋକଟା ଲେଖୁଛି—ଖୁବ୍ ଶାନ୍ତ; ସମାହିତ ଜଣାପଡ଼ୁଛି ।

ତା ପରେ ସେ ହୋଟେଲଶାଳାକୁ ଯାଇ ପ୍ରସ୍ତୁତ ହୋଇ ବସି ରହିଲା—କାଳେ ଡାକରା ପଡ଼ିବ, କିଛି ଦରକାର ହେଲେ । ଚେୟାରରେ ଢୁଳାଇ ପଡ଼ିଲା ସେ । ନିଦ ଭାଙ୍ଗୁ ଭାଙ୍ଗୁ ସକାଳ । ସେ ସବୁଦିନ ପରି ବସି କାମ ସାରି ଘର ଖରିକଲା । ଆଠଟା ସରିକି ଲେମୋନେଡ଼ର ପ୍ରାତଃ-ଭୋଜନ ପ୍ରସ୍ତୁତ କରି ରଖିଲା ।

କିନ୍ତୁ ମୁନିବ ପାଖକୁ ତା' ନେଇ ଯିବାକୁ ସାହସ କୁଳେଇଲା ନି । ଘଣ୍ଟା ବଜେଇ ଡାକିବେ ବୋଲି ଅପେକ୍ଷା କଲା । କିନ୍ତୁ ଘଣ୍ଟା ଆଜି ବାଜିଲା ନି । ନଅଟା ବାଜିଲା—କିନ୍ତୁ କାହିଁ ? ଦଶଟା ମଧ୍ୟ ।

କଣ ଘଟଣା, କିଛି ବୁଝି ନ ପାରି ସେ ଥାଳରେ ଖାଇବା ଜିନିଷ ନେଇ ଚାଲିଲା ମାଲିକଙ୍କ କୋଠରୀ ଆଡ଼େ । ଛାତି ତାର ଦୁମ୍ ଦୁମ୍ ପଡ଼ୁଥାଏ ।

ଦ୍ୱାର ପାଖରେ ଠିଆହୋଇ କାନ ପାରିଲା । ଦରଜାରେ ଖଡ଼ ଖଡ଼ କଲା । ସବୁ ଚୁପ୍‌ଚାପ୍, କିଛି ଉତ୍ତର ନାହିଁ । ସାହସ

ବାନ୍ଧି କବାଟ ଖୋଲି ସେ ଭିତରକୁ ପଶିଗଲା । ହଠାତ୍ ପାଗଳୀଙ୍କ ଭଳି ଚିତ୍କାର କରି ଉଠିଲା ସେ ! କ୍ଷଣେ କଳା ପଡ଼ିଗଲା ଆଲଟା ତା ହାତରୁ । ଏକ ଘୃଣ୍ୟ ଦୃଶ୍ୟ ଦେଖି ସେ ସ୍ତବ୍ଧ ଓ ବିସ୍ମିତ ହୋଇଗଲା । ମୂର୍ଚ୍ଛା ଯିବା ଉପରେ ।

ସ୍ମୃତିରୁ ଦୌଡ଼ି ଦେଇ ଲେମୋନାସ୍ଦେ ଝୁଲୁଚି ଘର ମଝିରେ । ବୀଭତ୍ସ, ବିବର୍ଣ୍ଣ ତା'ର ଜିଭଟା ପଦାକୁ ବାହାରି ପଡ଼ିଚି । ଡାହାଣ ଗୋଡ଼ର ଚଟିଟା ପଡ଼ିଚି ମେଜ ଉପରେ; ବାଁ ପଟଟା ସେଇମିତି ଲଟକିଛି ବାଁ ଗୋଡ଼ରେ । ଆଉ—ଗୋଟାଏ ରେସ୍ସର—ଓଲଟି ପଡ଼ିଚି ବିଛଣା ଉପରେ ।

ତାର ବୁଦ୍ଧି ହଜିଗଲା । ଭୟରେ ସେ ଧାଇଁ ପଳେଇଲା ସେଠୁ । ପଡ଼ୋଶୀମାନେ ଦୌଡ଼ିଆସିଲେ । ଡାକ୍ତର ଦେଖି କହିଲେ —ସେ ମରିଚି ଘଣ୍ଟା ଅଧ ଆଗରୁ ।

ଆତ୍ମହତ୍ୟାର ଟେବୁଲ ଉପରୁ ଖଣ୍ଡିଏ ଚିଠି ମିଳିଲା । ସେଥିରେ ଲେଖାଥିଲା—"ମୋତେ ମୋ ପୁଅ ଲଗିଲା ।"

—§✳§—

# ଅଟକବନ୍ଦୀ

ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର, ଏମ୍‌.ଏ.

କେତେ ନିଶିଥିନୀର ଘୋର ଅନ୍ଧକାର ମଧ୍ୟରେ ସେହି ପୁରାତନ କାରାଗାରର ବକ୍ଷଦେଶରେ ବହୁବାର ଏକ ଅସ୍ପଷ୍ଟ ଗୁଞ୍ଜନ ଶୁଣାଯାଇଥାଏ । ସେହି ଗୁଞ୍ଜନ, ସେହି ସଙ୍ଗୀତ, ସେହି ବିଳାପ କାହାର; ସେଥିରେ କାହାର ଶୋକବିହ୍ୱଳ କଣ୍ଠର ଲହରୀ ପବନରେ ଖେଳି ଖେଳି ଯାଇ କାରାଗାରର କଠୋର ଶିଳାପ୍ରାଚୀର ଦେହରେ ଆଘାତ ପାଏ, ପୁଣି ଆଘାତ ପାଇ ଫେରିଆସେ ।

ନିର୍ଜ୍ଜନ ରାତି । ନିଶା ସାଇଁ ସାଇଁ ଗର୍ଜୁଥିବ, ଊର୍ଦ୍ଧ୍ୱଦେଶରେ ଧ୍ୟାନମଗ୍ନ ଅଶାନ୍ତ ତପସ୍ୱୀ ସଦୃଶ ନୀଳାକାଶ ହଟେ ଅବା ତପସ୍ୟାମଗ୍ନ-ତପସ୍ୟାର ଅବ୍ୟକ୍ତ ସ୍ପନ୍ଦନ ସ୍ୱରୂପ ସତେ ଅବା କୋଟି କୋଟି ତାରା ଆତ୍ମପ୍ରକାଶ କରିଥାନ୍ତି । ପୁଣି ଝିଙ୍କାରୀର ଅବିଶ୍ରାନ୍ତ କ୍ରନ୍ଦନ ରାତ୍ରୀର ଅନ୍ଧକାରକୁ ଆହୁରି ଗମ୍ଭୀର କରିଦେଇଥାଏ । ସେହି ସମୟବେଳେ ଜେଲଫାଟକ ସେ ପାଖରୁ ଗୋଟାଏ ଅସ୍ପଷ୍ଟ ସ୍ୱର ଶୁଣାଯାଏ । ଏତେ ରାତ୍ରୀରେ କିଏ ନଗରବାସୀ କାହିଁକି ଅବା ସେ ଦୁର୍ଗମ ପଥଦେଇ ଯିବାଆସିବା କରନ୍ତେ ! ରାଜପଥ କେତେବେଳୁ ଶୂନ୍ୟଶାନ ହୋଇଗଲାଣି । ସେହି ପୁରୁଣା ସହରର ଗ୍ରେଟ ବଡ଼

ଦେବାମା ସବୁ ଯିଏ ଯାହାର ଦୋକାନ ବନ୍ଦକରି ଘରକୁ ଫେରିଲେଣି । କେବଳ ଗମ୍ଭୀର ନିର୍ଜ୍ଜନ ରାସ୍ତା, ତା' ଉପରେ ଅନନ୍ତ ଆକାଶର ପ୍ରତିଫଳିତ ଛାୟା, ସେ ଛାୟା ପୁଣି ତାରକାର ଆଲୋକରେ ସ୍ପଷ୍ଟ ହେଉଛି, ପୁଣି କେତେବେଳେ ଅସ୍ପଷ୍ଟ ହୋଇଯାଉଛି ।

ଆକାଶ ନୀରବ, ନିସ୍ପନ୍ଦ । ଜନପଥ ମଧ୍ୟ ନୀରବ । ଚତୁର୍ଦ୍ଦିଗରେ ସତେ ଯେପରି ସୀମାହୀନ ଆସ୍ତରଣ ବକ୍ଷରେ ଜେଲଫାଟକ, ଜେଲ ପାଚେରୀ ।

ଶୁଣାଯାଏ, ବ୍ରିଟିଶ ସରକାର ଯେତେବେଳେ କୃଷ୍ଣଚନ୍ଦ୍ରଗଡ ଅଧିକାର କରିଥିଲେ, ସେତେବେଳେ ଏହି ଅଞ୍ଚଳରେ ସ୍ଥାୟୀ- ଅଧିବାସୀମାନଙ୍କୁ କ୍ରମେ କ୍ରମେ ଆୟତ୍ତ ଏବଂ ପ୍ରଭାବିତ କରିବାପାଇଁ, ବିଶେଷତଃ ବିଦ୍ରୋହୀମାନଙ୍କୁ ଏବଂ ବିଦ୍ରୋହୀ ପ୍ରଜାମାନଙ୍କ ସ୍ଥାନୀୟ ନେତାମାନଙ୍କୁ ଜବତ୍ କରିବା ପାଇଁ ଇଂରେଜ ସରକାର ଗୋଟାଏ ବୃହତ୍ ଯୋଜନା ସ୍ଥିର କରିଥିଲେ । ସେହି ବ୍ରିଟିଶ ସରକାରଙ୍କର ଦମନଲୀଳାର ପ୍ରଥମ ଉନ୍ମତ୍ତ ଘୋଡସବାରର ପ୍ରତୀକ ହେଉଛି ଆଜି ଏହି ବିରାଟ ଜେଲ ଏବଂ ଏହି ବିରାଟ ଜେଲପାଚେରୀ କହିବ— ତା ବକ୍ଷଦେଶରେ ଗୋରା ଫଉଜଙ୍କର ବୟୁନଟ ମାଡ଼ରେ କେତେ ବିଦ୍ରୋହୀ ପ୍ରଜାଙ୍କର ରକ୍ତଜଳକ ମଉଳି ଯାଇଥିବ ।

ଇତିହାସ କହେ—କୃଷ୍ଣଚନ୍ଦ୍ରଗଡ଼, ସେ ଗଡ଼ର ରାଜା, ସେତେ- ବେଳେ କୁଆଡ଼େ ବଡ଼ ପରାକ୍ରମଶାଳୀ ଥିଲେ । ତାଙ୍କୁ କଳେବଳେ କବଳିତ କରିବା ପରେ ଇଂରେଜ ସରକାର ତାଙ୍କର ବାରମ୍ବାର ଅପମାନ ଲାଗି ସେ ଅଞ୍ଚଳରେ ଭୀଷଣ ଦମନଲୀଳା ଆରମ୍ଭ କରି-

ଦେଇଥିଲେ । ସେହି ପୁରୁଣା କଟକ-ସମ୍ବଲପୁର ରୋଡ଼—ସେହି ରୋଡ଼ରେ ଏହି କାରାଗାର ଦଣ୍ଡାୟମାନ ।

ଅନୁଗୁଳ-ଫୁଲବାଣୀ-କନ୍ଧମାଳ ଅଞ୍ଚଳ, ବ୍ରିଟିଶ ଶାସକଙ୍କର ଅତ୍ୟାଚାରରେ ସମଗ୍ର ଓଡ଼ିଶା ଆତଙ୍କଗ୍ରସ୍ତ, ତଥାପି ପାଇକପୁଅର ଧମନୀରକ୍ତ ସ୍ଥିର ନୁହେଁ, ସେ ତାର ଜବାବ ଦିଏ ବ୍ରିଟିଶ ସରକାର ନିର୍ମିତ ସେହି କାରାଗାରରେ ପ୍ରବେଶ କରି ।

ଅସହଯୋଗ ଆନ୍ଦୋଳନ ସମୟ । ସାରା ଭାରତରେ ସେହି ଗୋଟିଏ ମନ୍ତ୍ର । ସେହି ଏକ ମନ୍ତ୍ରବ୍ରତ ସାଧକ ଆଉ ତାଙ୍କର ମନ୍ତ୍ରର ଆବାହନ କୋଟି କୋଟି ପ୍ରାଣରେ ।

ଆକାଶ ନୀରବ ନିସ୍ତବ୍ଧ । ଅନୁଗୁଳର ସ୍ୱାଭାବିକ ଘନଘୋର ଶାଳଜଙ୍ଗଲର ମର୍ମକଥା ଯେତେ ଯେପରି ଝିଙ୍କାରି ଗୁଞ୍ଜନରେ ଅବ୍ୟକ୍ତରୁ ବ୍ୟକ୍ତ ହୋଇଯାଉଛି । ଇଏ ଯେଉଁ ସମୟର କଥା । କୁହାଯାଉଛି, ସେତେବେଳେ ଏତେ ଦୋକାନ-ବଜାର ସେଠି ମୁଣ୍ଡଟେକି ଠିଆ ହୋଇ ନ ଥିଲା । ଜନବସତି ଏତେ ଘନ ହୋଇ ନ ଥିଲା । ତେବେ ସେଠାରେ ଗୋଟାଏ ପ୍ରକାଣ୍ଡ ଜେଲ ନିର୍ମିତ ହୋଇସାରିଥିଲା ।

ସେତେବେଳର ଅନୁଗୁଳ ଉପଭଜନର ଲାଗିଏଡ଼ା ଅଞ୍ଚଳର ପ୍ରଜାବିଦ୍ରୋହ, ବିପ୍ଳବ ସମସ୍ତ ଏହି ନିର୍ଜନ ମୂକ କାରାଗାର ମଧ୍ୟରେ ହିଁ ନିଷ୍ପତ୍ତି ହେଉଥିଲା । ପାଟି ଫିଟେଇଲେ ଲାଠି, ମୁହଁ ଖୋଲିଲେ ଶବ୍ଦ ଛଡ଼ାଇନେଇ ।

ବାହାରେ ଆକାଶର ଜହ୍ନର ଆଲୋକ ରୋଷଣି ପ୍ଲାବନରେ ସମଗ୍ର ପୃଥିବୀ ଆଜ ରସବନ୍ତ ଏବଂ କରୁଣାକ୍ତ, କିନ୍ତୁ ଭିତରେ

ଢେଙ୍କେଣ କାରାଗାରର କଠିନ ଶିଳା ମଧ୍ୟରେ ମାନବ-ପୂଜାରୀର ଅଶ୍ରୁ-ଉପାସନା କି ଚମତ୍କାର !

ଏକ ଦୁଇ ତିନି ହୋଇ ଘଣ୍ଟା ବାଜିଉଠିଲା । ହଁ, ଏ ନିଶ୍ଚୟ ଜେଲ୍ ଘଣ୍ଟା । ରାତି ସେତେବେଳକୁ ପ୍ରାୟ ତିନିଟା । ଚତୁର୍ଦ୍ଦିଗରେ ଧରଣୀର ମୌନ ରାଜତ୍ୱ ଏବଂ ଚତୁର୍ଦ୍ଦିଗରେ ଶିଳାବଦ୍ଧ କାରାଗାରର ଅଶାନ୍ତ କଳଗୁଞ୍ଜନ । ରହି ରହି ୱାର୍ଡ଼ର ମଝିରେ ମଝିରେ ଡାକଦେଉଛନ୍ତି, "ଏ, କଏଦୀରେ ଏ, କଏ ସେ, କି ରେ ସନା ସେଠି, କି ରେ ପବନା ରଙ୍ଗଲୁ, ଶୋଇପଡ଼ ଶୋଇପଡ଼ । ରାତି ପାହିଲେ ପୁଣି ଘଣ୍ଟା ପେଲିବ ଯେ !"

ଏକ ନମ୍ବର କଏଦୀ, ଦୁଇ ନମ୍ବର କଏଦୀ, ତିନି ନମ୍ବର କଏଦୀ । ଏପରି ଏକ ଦୁଇ ତିନି କରି ହେଡ୍ ୱାର୍ଡ଼ର ସମସ୍ତଙ୍କ ନାମ ଡାକଯାଏ ।

ପ୍ରଥମ ନମ୍ବର କଏଦୀ ହେଉଛି ଶିବନାଥ ମାଝି । ଜୀବନରେ ବହୁବାର ଦାଗୀ, ଜେଲଯିବାଟା ତା ପକ୍ଷରେ ନୂଆ ନୁହେଁ, କାରଣ ସେ ବହୁବାର ଜେଲ ଯାଇଛି । ବର୍ଷେ, ଛ'ମାସ, ତିନି ମାସ ଏହିପରି ଧରାବନ୍ଧା । ଦ୍ୱିତୀୟ ନମ୍ବର କଏଦୀ ରଙ୍ଗିଆ ଦାସ, କହିବାର କଲେ ଜଣାଯିବ ସେ ଜେଲଟା ତାର ପୁରୁଣା ମାମୁଁ ଘର । ତୃତୀୟ ନମ୍ବର ଦାଗୀ ସୁରଥଚନ୍ଦ୍ର, ଏଥରକୁ ମିଶାଇ ସେ ପାଞ୍ଚ ଛ ଥର ଜେଲ ଭୋଗିସାରିଲାଣି । କଏ ଚୋରୀ, କଏ ଜନାକାରୀ, କଏ ଡକାୟତି, କଏ ହାଣକାଟ, କଏ ଘରପୋଡ଼ି, କଏ ଶାନ୍ତିଭଙ୍ଗ, ଏହିସବୁ ହେଲା ସେମାନଙ୍କ ବିରୁଦ୍ଧରେ ଅଭିଯୋଗ । ପ୍ରଥମ ବନ୍ଦୀ କହିଲା, "ମୋର ଆଉ ଚାରିମାସ ରହିଲା, ଦେଖୁଁ ଦେଖୁଁ ମାସ ଚାରିଟା ବିତିଯିବ ।

ଦ୍ୱିତୀୟ ଜଣକ କହିଲେ, "ଏଇଟା ହେଲା ଶ୍ରାବଣମାସ, ମୋର ଜେଲକୁ ଆସିବା ହେଲା ମୋଟେ ତିନି ମାସ, ଆଠ ମାସ ସଜାରୁ ଆଉ ପାଞ୍ଚ ମାସ ବାକି ରହିଲା।" ତୃତୀୟ ଜଣେ ହିସାବ କରି କହିଲା, "ଆମର ଖଲାସ ହେବା ପ୍ରଶ୍ନ ଉଠୁ ନା। ଆଠମଲ୍ଲିକଗଡ଼ରେ ପ୍ରଜାମଣ୍ଡଳ ଲୋକେ ଖୁବ୍ ସଭାସମିତି କରୁଛନ୍ତି। ଢେଙ୍କାନାଳଗଡ଼ ଘଡ଼ୁଛି ଉଠୁଛି। ତାଳଚେର ପ୍ରଜାମଣ୍ଡଳ ପ୍ରତ୍ୟକ୍ଷ ଆକ୍ରମଣ ପ୍ରସ୍ତାବ କରୁଛନ୍ତି। କଟକରେ କଂଗ୍ରେସ ନେତାଏ ଖୁବ ଆନ୍ଦୋଳନ ଚଳାଇଛନ୍ତି। ଯାଜପୁର ଅଞ୍ଚଳରେ ପ୍ରଜାମାନଙ୍କର ଇଂରେଜ ସରକାରଙ୍କୁ ଖଜଣା ନ ଦେବାପାଇଁ ପ୍ରତ୍ୟକ୍ଷ ଟିକସବିରୋଧୀ ଆନ୍ଦୋଳନ, ଅନ୍ୟ ପକ୍ଷରେ ଖୋର୍ଦ୍ଧାଠାରେ ପଚିଶ ଜଣ କଂଗ୍ରେସ-କର୍ମୀ ଗିରଫ, ରଣପୁରରେ ବଜପତ୍ରର ଦମନଲୀଳା, ସୁକିନ୍ଦା ଅଞ୍ଚଳରେ କୌଣସି ଏକ ପଲ୍ଲୀଗ୍ରାମରେ ଲୋକମାନଙ୍କର ହାତବୋମା ତିଆରି କରିବାପାଇଁ ଗୁପ୍ତଷଡ଼ଯନ୍ତ୍ର।" ଏହି ହେଲା ସେତେବେଳର ଦେଶର ସମ୍ବାଦ।

ଅନୁଗୁଳର ସେହି ପ୍ରାଚୀନ କାରାଗାର। ତାର ବକ୍ଷଦେଶରେ କଏଦୀମାନଙ୍କର ଅଶ୍ରୁତର୍ପଣ ଏକଦା ଶ୍ରାବଣ ରାତିର ବର୍ଷଣମୁଖର ପଥରକୁ ସିକ୍ତ ଏବଂ ଶକ୍ତ କରୁଥିଲା।

ଶିବାନନ୍ଦବାବୁ ସେହି ଜେଲରେ ଅଟକବନ୍ଦୀ। ଯେତେ-ବେଳେ ସମୟ ମିଳେ, ସେ ସେତେବେଳେ ଅନ୍ୟ ବନ୍ଦୀଭାଇମାନଙ୍କ ସହିତ ଆଲୋଚନା କରୁଥିଲେ। ଆଲୋଚନା ମଧ୍ୟରେ ଦେଶର ଚଳମାନ ସମସ୍ୟା ହିଁ ମୁଖ୍ୟ ବିଷୟ। ଜେଲ, ଜୋରିମାନା ଦଣ୍ଡ ହେଉଛି ସେତେବେଳର ବିଦ୍ରୋହୀ ଜନତାର ଏକମାତ୍ର ପ୍ରାପ୍ୟ ପୁରସ୍କାର। ଶିବାନନ୍ଦବାବୁ ଇତରଶ୍ରେଣୀର କଏଦୀମାନଙ୍କ ସହିତ

ସମ୍ପର୍କ ସ୍ଥାପନ କରନ୍ତି, ସେମାନଙ୍କୁ ନାନା ଜାତୀୟ-ସମସ୍ୟା ଆଲୋଚନା କରି ଶୁଣାନ୍ତି । ଜେଲ ଭିତରେ କାହାକୁ ପାଠ ପଢ଼ାନ୍ତି, କାହାକୁ କଂଗ୍ରେସ ଆନ୍ଦୋଳନ କଥା କହନ୍ତି, କାହାକୁ ଅରଟରେ କପର ସୂତା କାଟିବାକୁ ହୁଏ ଶିଖାଇ ଦିଅନ୍ତି । ଫଳରେ ଦୁଇ ଚାରିଟା ମାସର ଏକତ୍ର ଜେଲଦଣ୍ଡବଶତଃ ସେହି ପ୍ରାଚୀର ଆବଦ୍ଧକାରାଗାର ମଧ୍ୟରେ ଗୋଟାଏ ବିଶାଳ ହୃଦୟ-ରାଜ୍ୟ ପ୍ରତିଷ୍ଠିତ ହୋଇ ସାରିଥିଲା ।

ବିଦେଶୀ ଶାସକ ଇଂରେଜ ସରକାରଙ୍କର ଆଇନ ବଳରେ ଶିବାନନ୍ଦବାବୁ ସେହି ସମୟରେ ଅନୁଗୁଳ ଜେଲରେ ଅଟକ-ବନ୍ଦୀ ।

ଶିବାନନ୍ଦବାବୁ ଆସିବା ଦିନଠାରୁ ପନ୍ଦର ନମ୍ବର କଏଦୀ ଲେଖାପଢ଼ା ଶିଖିସାରିଲାଣି । ୫ମ ନମ୍ବର କଏଦୀ ଅରଟରେ ସୂତା କାଟିଲାଣି । ଛଅ ନମ୍ବର କଏଦୀ ରାମ ବେହେରା ସକାଳୁ ଉଠି ରାମଧୂନ ଗାଇଲାଣି । କିଏ ହୁଏ ତ ଭିତରେ ଭିତରେ ଜେଲର କର୍ମଚାରୀ-ମାନଙ୍କୁ ଲୁଚେଇ ଗାନ୍ଧୀ ମହାତ୍ମାଙ୍କ ପ୍ରଚାର-ପୁସ୍ତିକା ପଢ଼ିସାରିଲାଣି ; ଆଉ କିଏ ହୁଏତ କଂଗ୍ରେସ ଶପଥ-ପତ୍ରରେ ସ୍ୱାକ୍ଷର କରିସାରିଲାଣି ।

ବ୍ରିଟିଶ ସରକାର କଂଗ୍ରେସକର୍ମୀ ଶିବାନନ୍ଦଙ୍କୁ ଗିରଫ କରି ଅଟକବନ୍ଦୀ ଭାବରେ ଜେଲରେ ଆବଦ୍ଧ କରି ରଖିଅଛନ୍ତି ।

ବନ୍ଧୁ ରାତ୍ରିରେ ଶିବାନନ୍ଦବାବୁ ଆଉ ଜେଲର ଅନ୍ୟାନ୍ୟ କଏଦୀମାନଙ୍କ ମଧ୍ୟରେ ଆଲୋଚନା ହେବାର ଶୁଣାଯାଏ । ଜେଲ କର୍ମଚାରୀ ଏଥିପାଇଁ ଅଟକବନ୍ଦୀ ଏବଂ ଅନ୍ୟାନ୍ୟ ବନ୍ଦୀମାନଙ୍କୁ ସ୍ୱତନ୍ତ୍ର ସ୍ୱତନ୍ତ୍ର କୋଠରୀରେ ରଖିଥାନ୍ତି । ଯେଉଁ ଜାତୀୟ ବିପ୍ଳବର ଅଗ୍ନିକଣା

ଜୈବନ-ଡାହାଣ୍ଡି-ପଥର ଭେଦି ସହଜରେ ସଂଗୃହୀତ ହୁଏ, ତାହା କଣ ସାମାନ୍ୟ କାରାଗାରର ବନ୍ଧନ ପାଇଁ ଅପେକ୍ଷା କରେ ?

ମହାପୁରୁଷ ଶ୍ରୀକୃଷ୍ଣ ମଧ୍ୟ କାରାଗାରର ଯନ୍ତ୍ରଣା ସହ୍ୟ କରିଥିଲେ । ରାମଚନ୍ଦ୍ର ମଧ୍ୟ ଦିନେ ରାବଣର ଦମନଲୀଳାର ସମ୍ମୁଖୀନ ହୋଇଥିଲେ ।

କଏଦୀ ନମ୍ବର ଦଶ; ନାମଟି ତାର ଗୁରୁବାରି ଓଝା । ସରକାର ତାକୁ କାହିଁକି ଜେଲ ଦେଇଥିଲେ, ସେ ବି ଜାଣେ ନା—ସରକାର ଜାଣିଥିବେ କି ନା ସନ୍ଦେହ । ତେବେ ଯାହାହେଉ, ଗୁରୁବାରି ଜେଲରେ ତିନି ବର୍ଷ କାରାଦଣ୍ଡ ଭୋଗି ସାରିଲଣି, ତାହା ତିନି ବର୍ଷ ତଳର ଘରଦ୍ୱାର ସଂସାର, ପିଲାକୁଟୁମ୍ବ—ଏସବୁ ଆଜି ତାର ମନେ ନାହିଁ । ବିଶେଷତଃ ଶିବାନନ୍ଦବାବୁଙ୍କ ସଂସର୍ଗରେ ଆସିବା ଦିନଠାରୁ ସେ ଏକାବାରକେ ବଦଳି ଯାଇଛି । ତା'ର ଘରୁ ଗୁରି-ଛଅ ମାସରେ ଥରେ ଲେଖାଏଁ ଚିଠି ଖଣ୍ଡେ ଖଣ୍ଡେ ଆସେ । ସେଥିରେ ସବୁ ଯାହା ଲେଖାଯାଏ, ତାହା ପଢ଼ିବା ପାଇଁ କାହାର ଧୈର୍ଯ୍ୟ ନ ଥାଏ । ଗୁରୁବାରି ହୁଏତ ଦିନେ ଜେଲକୁ ଆସିଥିଲା ଆଉ କେତେ ଜଣଙ୍କୁ ଅନାହାରମୁଖରୁ ବଞ୍ଚାଇବା ପାଇଁ, କିନ୍ତୁ ଆଜି ତାର ସମ୍ପୂର୍ଣ୍ଣ ପରିବର୍ତ୍ତନ—ଭିତରେ ବାହାରେ ସବୁଠି ତା'ର ମନରାଜ୍ୟରେ ସେହି ଗୋଟିଏ ପ୍ରତିଜ୍ଞା—ସେ ପ୍ରତିଜ୍ଞା ହେଉଛି କଂଗ୍ରେସ ମନ୍ତ୍ର, କଂଗ୍ରେସର ଜାତୀୟ ଆନ୍ଦୋଳନ ଆହ୍ୱାନ ।

ରାତି ପାହିଲା । ସେଦିନ ୧୯୪୨ ମସିହା ଅଗଷ୍ଟ ୧୮ ତାରିଖ । ଶାଳଗଛ ଜଙ୍ଗଲ ଉହାଡ଼ରେ ପୃଥିବୀର ନୂତନ ହସ ପୁଣି ଦେଖା ଦେଲାଣି ।

ଜେଲର ଲୁହା ତୋରଣ-ଦେଶ ମୁକ୍ତ ହୋଇଗଲା । ଜେଲର୍ ସିମସନ୍ ସାହେବ ନିଜେ ଅର୍ଡ଼ର ଧରି ହାଜର । ଓ୍ୟାର୍ଡ଼ର ଅନୱ୍ୟାର ଅଲି ଖାଁ ମଧ୍ୟ ସାହାନ୍ତା ପହରରୁ ସାବଧାନ ହୋଇଛି ।

ଆଜି ଗୁରୁବାଘ ଦାସର ତିନିବର୍ଷ ଜେଲଦଣ୍ଡ ପୂର୍ଣ୍ଣ ହୋଇଗଲା । ଆଜି ଏଣୁ ତାର ମୁକ୍ତି । ତିନି ବର୍ଷ ଆଗେ ଯେଉଁ ଗୁରୁବାଘ ଚୋରି ଅପରାଧରେ ସାବ୍ୟସ୍ତ ହୋଇ ଜେଲର ପାଚଶ ତଳେ ଭର୍ତ୍ତି ହୋଇଥିଲା, ସେ ଆଜି ତିନି ବର୍ଷ ପରେ ନିର୍ଦ୍ଦୋଷ । ଏ ଭିତରେ ତାର ସେ ଅପରାଧ ଦୂର ହେଲା କିପରି ? ତା'ର ପରିବାରରେ ପିଲାକୁଟୁମ୍ବ ମଧ୍ୟ ଅନାହାର ଭୋଗୁଥିବେ, ତାର ଅଢ଼େଇ ବର୍ଷର ନୂତନ ଶିଶୁପୁଅ ମଧ୍ୟ ମାଣ୍ଡିଆ ଯାଉ ଟିକିଏ, କ୍ଷୀର ଟିକିଏ ପାଉ ନ ଥିବ । ତେବେ 'ଗୁରୁବାଘ'ର ଚୋରିଦୋଷ କଟିଗଲା କିପରି, କଟିଲେ ଅବା ଲାଭଟା କଅଣ ?

ଜେଲର ସିମସନ ସାହେବ କହିଗଲେ, "ଗୁରୁବାଘ ଦାସ ଆଜି ଖଲାସ ।" ତାର ହାତରୁ ଲୁହାଶିକୁଳି ଖୋଲି ଦିଆଗଲା । ଦୁଇ ଗୃହ ହାତିଆ ଜେଲ-ଲୁଗା ମଧ୍ୟ ତା'ଠାରୁ କାଢ଼ି ନିଆଗଲା । ଗୁରୁବାଘ ଦାସ ଆଜି ମୁକ୍ତ ।

ଓ୍ୟାର୍ଡ଼ର ଅନୱ୍ୟାର ଅଲି ଖାଁ ସଲାମ ଦେଇ ଲୁହା ଗେଟ୍ ଖୋଲିଦେଲା । ଗୁରୁବାଘକୁ ଆଜି ପୁଣି ତା'ର ନିଜ ସଂସାରକୁ ଫେରିବାକୁ ହେବ । ନା—ତା'ର ସଂସାର ବୋଲି ସେମିତି ଲୋଭ କିମ୍ବା ଆକର୍ଷଣ ନାହିଁ । ତେବେ ସେହି ଛୋଟ ଅଢ଼େଇ ବର୍ଷର ଶିଶୁ ପୁଅ । ସେ ତାକୁ କେବେ ସ୍ୱଚକ୍ଷୁରେ ଦେଖିନାହିଁ । ତାର କଅଁଳ

କଥା, ତାର ରଙ୍ଗଢ଼ଙ୍ଗ ଗୁଳି···ନା·· ନା, ସେ ଯେ ଗୋଟାଏ ଚୋରର ଦାଗୀ ବାପା, ନା···ନା ଶିଶୁପୁତ୍ର ମନରେ ସେ ଆଘାତ ଦେବାକୁ ଚାହେଁ ନା—ନା—ସେ ଫେରିବ ନାହିଁ । ଶିବାନନ୍ଦବାବୁ କହିଲେ,"କ ଗୁ ରୁବାଘ ! ତୁମେ ଯାଅ, ଆଉ ଏ ଜେଲରେ ରହିବାକୁ କଣ ଭଲ ଲାଗୁଛି ?" ଗୁ ରୁବାଘ ମନେମନେ ଭାବୁଥିଲା, "ଆଜି ସାରା ଦେଶଟା ଗୋଟିଏ ବିରାଟ କାରାଗାର । ଆଉ ଆଜି ପ୍ରତ୍ୟେକେ ସେଥିରେ ଅଟକବନ୍ଦୀ ହେବା ଦରକାର ।" ଗୁ ରୁବାଘ ପଚାରିଲା, "ଶିବୁବାବୁ ! ଅଟକବନ୍ଦୀର କ'ଣ ଦଣ୍ଡର ଗୋଟାଏ ସୀମା ନ ଥାଏ ?"ଶିବାନନ୍ଦବାବୁ ହସିଲେ । ଆଜି ସେହି ଜେଲ ଠିଆହୋଇଛି । ଦୀର୍ଘ ୨୦ ବର୍ଷ ପର କଥା । ସେଦିନର ଅଟକବନ୍ଦୀ ଶିବାନନ୍ଦବାବୁ ନାହାନ୍ତି; କଂଗ୍ରେସ ଆନ୍ଦୋଳନରେ ସେ ଯୋଗଦେଇ ଶେଷରେ ଅନଶନରେ ପ୍ରାଣ ହରାଇଥିଲେ ।

× × ×

ତାଙ୍କ ପୁଅ ରଜନୀବାବୁ ଆଜି ଇଞ୍ଜିନିୟର । ଏହି ଅଳ୍ପଦିନ ତଳେ ସେ ତାଙ୍କର ନବବିବାହିତ ପତ୍ନୀ ଅଳକାଙ୍କୁ ନେଇ ରାଉରକେଲା ଗସ୍ତରେ ଯିବା ବାଟରେ ଅନୁଗୁଳ ରୋଡ଼ ଉପରେ ଠିଆହୋଇ ଦେଖୁଥିଲେ ନିର୍ବାକ୍ ମନରେ ଜେଲର ଜୀର୍ଣ୍ଣ ପ୍ରାଚୀର, ଯେଉଁ ଜୀର୍ଣ୍ଣ ପ୍ରାଚୀର ତଳେ କେତେ ଅଟକବନ୍ଦୀ ଦିନେ ଦେଶର ଜନନୀକୁ ବନ୍ଦନା ଜଣାଉଥିଲେ କାରାଗାରର ନୀରବତା ମଧ୍ୟରେ ।

—ଃ✻ଃ—

ମୁଦ୍ରାକର—ମେଘମାଳା ପ୍ରିଣ୍ଟର୍ସ, ଜୋବ୍ରାସାହି, କଟକ-୧